# ଭାରତର ରାଷ୍ଟ୍ରପତି



ରମେଶ ଚନ୍ଦ୍ର ବେହେରା

ଭାରତର ରାଷ୍ଟ୍ରପତି
❖ ଲେଖକ : ରମେଶ ଚନ୍ଦ୍ର ବେହେରା ❖ ପ୍ରକାଶକ : ଚନ୍ଦ୍ରମଣି ଭୂୟାଁ, ପ୍ରଜ୍ଞାଧାରା, କଲେଜରୋଡ, ସାଲେପୁର, କଟକ, ଫୋନ୍ -୨୩୫୨୩୨୫
❖ ପ୍ରଥମ ପ୍ରକାଶ : ୨୦୦୩ ଡିସେମ୍ବର ❖ ଛାପା : ବିଶ୍ୱମୁକ୍ତି ପବ୍ଲିକେଶନ, ସହିଦନଗର, ଭୁବନେଶ୍ୱର -୭, ଫୋନ୍ - ୨୫୪୧୪୨୯

ମୂଲ୍ୟ : ୨୫/- ମାତ୍ର

---

BHARATARA RASTRAPATI
❖ By : Ramesh Ch. Behera ❖ Published by : Chandramani Bhuyan, Prangya Dhara, College Road, Salipur, Cuttack, Ph. 0671 - 2352325 ❖ 1st Edition : 2003 December ❖ Printed at : Vishwamukti Publication, Bhubaneswar - 7, Ph. 0674 - 2541429

Price : 25/-

# ପୁସ୍ତକ ପ୍ରସଙ୍ଗରେ ପଦେ.....

ଦେବଭୂମି ଭାରତ, ପୂର୍ଣ୍ଣଭୂମି ଭାରତ,ବୈଦିକ ସଭ୍ୟତାକୁ ନେଇ ଭାରତ ସୁଶୋଭିତ । ଯାହାର ମୌଳିକ ଆଦର୍ଶ, ସତ୍ୟ, ଶିବ, ସୁନ୍ଦର କିମ୍ବା ସତ୍ୟମେବ ଜୟତେ' ଉପରେ ଆଧାରିତ । ଯାହାର ଅନ୍ତଃସ୍ୱର ବିଶ୍ୱର ଏ ପ୍ରାନ୍ତରରୁ ଅନ୍ୟ ପ୍ରାନ୍ତରକୁ ସ୍ପର୍ଶ କରିଛି ନିବିଡ଼ ଭାବରେ । ଭାରତରେ ପ୍ରାକୃତିକ ସମ୍ପଦ ଓ ତାର ବିଭବକୁ ଦେଖି ଇଂରେଜମାନେ ବାଣିଜ୍ୟ କରିବା ବାହାନାରେ ଆସି ଭାରତର ଶାସନ ଦଣ୍ଡକୁ ନିଜ ହାତକୁ ନେଇଗଲେ । ଅନେକ ଦିନ ପର୍ଯ୍ୟନ୍ତ ଇଂରେଜମାନଙ୍କ ହାତରେ ଭାରତ ପରାଧିନ ରହିଲା । ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ ସାରା ଭାରତ ବର୍ଷକୁ ଜାଗ୍ରତ କଲା। ଷାଠିଏ କୋଟି ଜନତା ଭାରତର ମୁକ୍ତି ପାଇଁ ପାଗଳ ହୋଇଉଠିଲେ ।

ଶେଷରେ ୧୯୪୭ ଅଗଷ୍ଟ ୧୫ ତାରିଖ ଭାରତ ହେଲା ସ୍ୱାଧୀନ । ଏହାପରେ ଭାରତ ଶାସନ ଖସଡ଼ା ପ୍ରସ୍ତୁତ ହେଲା ଓ ଭାରତ ହେଲା ଧର୍ମନିରପେକ୍ଷ,ସାର୍ବଭୌମ୍ୟ ସାଧାରଣତନ୍ତ୍ର ରାଷ୍ଟ୍ର । ରାଷ୍ଟ୍ରର ମୁଖ୍ୟ ହେଲେ ରାଷ୍ଟ୍ରପତି । ସେ ହେଲେ ଦେଶର ପ୍ରଥମ ନାଗରିକ ।

ଭାରତର ପ୍ରଥମ ରାଷ୍ଟ୍ରପତି ହେଲେ "ଡକ୍ଟର ରାଜେନ୍ଦ୍ର ପ୍ରସାଦ ।"

୧୯୫୦ ମସିହା ଠାରୁ ୨୦୦୩ ପର୍ଯ୍ୟନ୍ତ ଭାରତର ରାଷ୍ଟ୍ରମୁଖ୍ୟ, ରାଷ୍ଟ୍ରପତିମାନଙ୍କ ଜୀବନୀକୁ ନେଇ ଏଇ ମୋର କ୍ଷୁଦ୍ର ପ୍ରୟାସ ମାତ୍ର ।

ଏଥିରେ ସନ୍ନିବେଶିତ ଲେଖାଗୁଡ଼ିକ ପର୍ଯ୍ୟାୟକ୍ରମେ ଓଡିଶାର ବିଭିନ୍ନ ଦୈନିକ ସମ୍ବାଦ ପତ୍ରର ପୃଷ୍ଠାରେ ପ୍ରକାଶିତ ।

ପୁସ୍ତକର ପରିକଳ୍ପନା ପାଣ୍ଡୁଲିପି ପ୍ରସ୍ତୁତରେ ମୋର ସହଧର୍ମିଣୀ ଶ୍ରୀମତୀ କମଳିନୀ ଦାସ (ବେହେରା)ଙ୍କ ସାହାର୍ଯ୍ୟ ପାଇଁ ଆନ୍ତରିକ ଶ୍ରଦ୍ଧା ପ୍ରକାଶ କରୁଛି । ପରିଶେଷରେ ପୁସ୍ତକଟିକୁ କବି ପ୍ରକାଶକ, ସଦାଶିବ ଦାଶଙ୍କ ସହଧର୍ମିଣୀ ଅନସୂୟା ଦାଶଙ୍କୁ ଉତ୍ସର୍ଗ କରୁଛି ।

ରମେଶ ବେହେରା

# ସୂଚୀପତ୍ର

# ଭାରତର ରାଷ୍ଟ୍ରପତି

ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ ରାଷ୍ଟ୍ରର ଶାସନ ମୁଖ୍ୟ ହେଲେ ରାଷ୍ଟ୍ରପତି । ସେ ହିଁ ଭାରତର ପ୍ରଥମ ନାଗରିକ ।

ସାମ୍ବିଧାନିକ ୫ମ ଧାରାରେ ଉଲ୍ଲେଖ କରାଯାଇଛି । ଭାରତ ପରି ଏକ ଗଣତାନ୍ତ୍ରିକ ଉପ-ମହଦେଶରେ ରାଷ୍ଟ୍ରପତି ପଦ ରହିବ । ସେ ହେବେ ରାଷ୍ଟ୍ରର ପୁରୋଧା ପ୍ରତିନିଧି ଓ ମୁରବୀ । ସମ୍ବିଧାନ ତାଙ୍କ ପଦବୀକୁ ସର୍ବୋଚ୍ଚ ସ୍ଥାନ ଦେଇଛି ।

ରାଷ୍ଟ୍ରପତି ଦେଶର ପ୍ରକୃତ ଶାସକ । ତାଙ୍କରି ନାମରେ ହିଁ ଦେଶର ଶାସନ ପରିଚାଳିତ ହୋଇଥାଏ ଏବଂ ତାଂକର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଭାରତର ମନ୍ତ୍ରିମଣ୍ଡଳ ଗଠନ ଓ ଶପଥ ପାଠ ଅନୁଷ୍ଠିତ ହୋଇଥାଏ । ଭାରତ ଶାସନ କଳରେ ରାଷ୍ଟ୍ରପତି ରବର ଷ୍ଟାମ୍ପ ହେଲେ ବି ଭାରତୀୟ ସମ୍ବିଧାନରେ ତାଙ୍କର ଗୁରୁତ୍ୱ ଅନେକ । ସେ ଯେଉଁ ମୁହୂର୍ତ୍ତରେ ଚାହିଁବେ ସେଇ ମୁହୂର୍ତ୍ତରେ ହିଁ ଭାରତର ଶାସନ କଳକୁ ଅଚଳ କରି ମନ୍ତ୍ରିମଣ୍ଡଳକୁ ଭାଙ୍ଗିଦେଇ ପାରିବେ । ଭାରତର ତିନି ବାହିନୀ, ଜଳ, ସ୍ଥଳ, ଆକାଶ ବାହିନୀର ମୁଖ୍ୟ କମାଣ୍ଡରଙ୍କୁ ସେ ହିଁ ନିଯୁକ୍ତି ଦିଅନ୍ତି । ତାଙ୍କର ବିନା ସ୍ୱାକ୍ଷରରେ କୌଣସି ଚୁକ୍ତିନାମା କିମ୍ବା ଯୁଦ୍ଧ ଘୋଷଣା ହୋଇପାରେ ନାହିଁ । ସେ ହିଁ ଦେଶର ଗୁରୁତ୍ୱପୂର୍ଣ୍ଣ ପ୍ରଶାସକମାନଙ୍କୁ ନିଯୁକ୍ତି ଦେଇଥାନ୍ତି । ତା'ଛଡ଼ା ମୁଖ୍ୟ ନ୍ୟାୟାଳୟମାନଙ୍କର ନ୍ୟାୟାଧିଶ ନାମଙ୍କୁ ନିଯୁକ୍ତି, ଦେଇଥାନ୍ତି ।

ରାଷ୍ଟ୍ରପତି ହେବା ପୂର୍ବରୁ ପ୍ରାର୍ଥୀ ଯେ କୌଣସି ଦଳଭୁକ୍ତ ହୁଅନ୍ତୁନା କାହିଁକି, ରାଷ୍ଟ୍ରପତି ହେବା ପରେ ସେ ନିଶ୍ଚିତ ନିରପେକ୍ଷ ହେବାକୁ ବାଧ ହୋଇଥାନ୍ତି ।

ରାଷ୍ଟ୍ରପତି ପ୍ରଦ ପାଇଁ ନିର୍ବାଚିତ ବ୍ୟକ୍ତିଙ୍କ, ସାମ୍ବିଧାନିକ ଯୋଗ୍ୟତା ଯେତିକି ଆବଶ୍ୟକ, ତା'ଠାରୁ ଅଧିକ ଆବଶ୍ୟକ ସ୍ୱାସ୍ଥ୍ୟ ସାମାଜିକ ମର୍ଯ୍ୟାଦା ଓ ଶିକ୍ଷାଗତ ଯୋଗ୍ୟତା । କାରଣ ଏଇଠି ସ୍ମରଣ ରଖିବାକୁ ହେବ, ରାଷ୍ଟ୍ରପତି ଦେଶର ସାଂସ୍କୃତିକ, ରାଜନୈତିକ ଭାବଧାରାର ପ୍ରତୀକ ।

ସମ୍ବିଧାନର ୫୬ ଧାରା ଅନୁଯାୟୀ ରାଷ୍ଟ୍ରପତିଙ୍କ ଯୋଗ୍ୟତା ନିର୍ଦ୍ଦିଷ୍ଟ ରହିଛି, ଯଥା:- ପ୍ରଥମେ ସେ ଭାରତର ନାଗରିକ ହୋଇଥିବେ । ଯଦି ଜଣେ ବିଦେଶୀ ନାଗରିକ ଭାରତର ନାଗରିକତ୍ୱ ଗ୍ରହଣ କରନ୍ତି, ତେବେ ସେ ମଧ ଭାରତର ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀ ହୋଇପାରିବେ । ତାଙ୍କୁ ୩୫ ବର୍ଷରୁ ଉର୍ଦ୍ଧ୍ୱ ହୋଇଥିବା ଆବଶ୍ୟକ । ଲୋକସଭାର ସଭ୍ୟମାନଙ୍କ ପାଇଁ ଉଦ୍ଦିଷ୍ଟ ଅନ୍ୟାନ୍ୟ ଯୋଗ୍ୟତା ଥିବା ଦରକାର । କୌଣସି ଲାଭଜନକ

ସରକାରୀ ବା ବେସରକାରୀ ପଦ ପଦବୀରେ ନଥିବେ । ନିର୍ବାଚିତ ହେବା ପରେ ପାର୍ଲାମେଣ୍ଟ କି ବିଧାନସଭାର ସଭ୍ୟ ହୋଇ ରହିପାରିବେ ନାହିଁ ।

ସମ୍ବିଧାନର ୫୬ ଧାରା ଅନୁଯାୟୀ ରାଷ୍ଟ୍ରପତି ୫ ବର୍ଷ ନିଜ ପଦବୀରେ ରହିପାରିବେ । ଆବଶ୍ୟକ ମନେକଲେ ଉପରାଷ୍ଟ୍ରପତିଙ୍କ ହାତରେ ଇସ୍ତଫା ପତ୍ର ଦେଇ କାର୍ଯ୍ୟରୁ ଅନ୍ତର ହୋଇପାରିବ । ଆବଶ୍ୟକ ସ୍ଥଳେ ପାଞ୍ଚବର୍ଷ ପୂରି ଯାଇଥିଲେ ମଧ ଯଦି ପରବର୍ତ୍ତୀ ରାଷ୍ଟ୍ରପତି ନିର୍ବାଚିତ ହୋଇ ନଥାନ୍ତି । ତେବେ ସେ ରାଷ୍ଟ୍ରପତି ନିର୍ବାଚନ ପର୍ଯ୍ୟନ୍ତ ନିଜ ପଦବୀରେ ଅବସ୍ଥାନ କରିଥାନ୍ତି । ଜଣେ ରାଷ୍ଟ୍ରପତି ଦୁଇ ଥରରୁ ଅଧିକ ଥର ନିର୍ବାଚିତ ହେବାର ପରମ୍ପରା ଆମ ସମ୍ବିଧାନରେ ନାହିଁ ।

ରାଷ୍ଟ୍ରପତି ନିଜ ପଦବୀ ପାଇଁ କେତକ ସୁବିଧା ସୁଯୋଗ ମାନ ଭୋଗ କରିଥାନ୍ତି, ତାକୁ ୮ ଭାଗରେ ବିଭକ୍ତ କରାଯାଉଛି ।

୧. କାର୍ଯ୍ୟପାଳିକା, ୨. ଆଇନ ପ୍ରଣୟନ, ୩. ଆର୍ଥିକ, ୪. ନ୍ୟାୟିକ, ୫. ସାମରିକ, ୬. କୂଟନୈତିକ, ୭. ଜରୁରୀକାଳୀନ, ୮. ଆନୁଷ୍ଠାନିକ ।

ରାଷ୍ଟ୍ରପତିଙ୍କ ପରେ ଉପରାଷ୍ଟ୍ରପତି ହିଁ ଭାରତର ଦ୍ୱିତୀୟ ନାଗରିକ । ରାଷ୍ଟ୍ରପତିଙ୍କ ଅନୁପସ୍ଥିତରେ ଉପରାଷ୍ଟ୍ରପତି ରାଷ୍ଟ୍ରପତିଙ୍କ କାର୍ଯ୍ୟ ପରିଚାଳନା କରନ୍ତି । ଅତୀତରେ ଅନେକ ଉପରାଷ୍ଟ୍ରପତି ପଦରୁ ରାଷ୍ଟ୍ରପତି ହେବାର ଦୃଷ୍ଟାନ୍ତ ରହିଛି ।

ରାଷ୍ଟ୍ରପତିଙ୍କ ପରି ଉପରାଷ୍ଟ୍ରପତି ମଧ ଉଭୟ ସଭାର ସଦସ୍ୟମାନଙ୍କ ଦ୍ୱାରା ନିର୍ବାଚିତ ହୋଇଥାନ୍ତି । ସଂସଦର ଉଭୟ ସଭାର ସଭ୍ୟମାନଙ୍କୁ ନେଇ ନିର୍ବାଚନ ହୋଇଥାଏ ।

ଉପରାଷ୍ଟ୍ରପତି  ଙ୍କ କାର୍ଯ୍ୟ ତ୍ରିବିଧ ୧. ରାଜ୍ୟସଭାର ଅଧକ୍ଷ, ୨. ଅସ୍ଥାୟୀ ରାଷ୍ଟ୍ରପତି, ୩. ସାଂସ୍କୃତିକ କାର୍ଯ୍ୟ, ଏହାଛଡ଼ା ଉପରାଷ୍ଟ୍ରପତି ଦିଲ୍ଲୀ ବିଶ୍ୱବିଦ୍ୟାଳୟର କୁଳାଧିପତି । ଏଯାଏ ଆମ ଦେଶର ବିଶିଷ୍ଟ ବ୍ୟକ୍ତିମାନେ ଉପରାଷ୍ଟ୍ରପତି ପଦ ମଣ୍ଡନ କରି । ରାଜ୍ୟସଭା ସ୍ଥାୟୀ ଅଧକ୍ଷ ବହୁ ସୁନାମ ଅର୍ଜନ କରିଛନ୍ତି ।

ସର୍ବପଲ୍ଲୀ ରାଧାକ୍ରିଷ୍ଣନ- ୧୯୫୨-୧୯୬୨, ଡଃ ଜାକିର ହୁସେନ - ୧୯୬୨-୧୯୬୭, ଶ୍ରୀ ଭି.ଭି. ଗିରି- ୧୯୬୭-୧୯୬୯, ଶ୍ରୀ ବି.ଏସ୍. ପାଠକ- ୧୯୬୯-୧୯୭୪, ଶ୍ରୀ ବି.ଡ଼ି. ଜତ୍ତି- ୧୯୭୪-୧୯୭୯, ଶ୍ରୀ ଜଷ୍ଟିସ୍ ହିଦାୟତୁଲ୍ଲା- ୧୯୭୯-୧୯୮୪, ଶ୍ରୀ ଆର. ଭେଙ୍କଟରମଣ- ୧୯୮୬-୧୯୮୭, ଶ୍ରୀ ଶଙ୍କରଦୟାଲ ଶର୍ମା-୧୯୮୭-୧୯୯୨, ଶ୍ରୀ କେ.ଆର. ନାରାୟଣନ୍- ୧୯୯୨-୧୯୯୭, ଶ୍ରୀ କୃଷ୍ଣକାନ୍ତ-୧୯୯୭-୨୦୦୨, ଭୈରୋବ ସିଂ ଶେଖାୱାତ୍ ୨୦୦୨-ରୁ ...... ।

# ରାଷ୍ଟ୍ରପତି ନିର୍ବାଚନ

ରାଷ୍ଟ୍ରପତି ରାଷ୍ଟ୍ରର ମୁଖ୍ୟ । ଏଥିପାଇଁ ରାଷ୍ଟ୍ରପତି ନିର୍ବାଚନ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ନିର୍ବାଚନ ସାଧାରଣତଃ ଦୁଇ ପ୍ରକାର । ପ୍ରତ୍ୟକ୍ଷ ନିର୍ବାଚନ ଓ ପରୋକ୍ଷ ନିର୍ବାଚନ । ରାଷ୍ଟ୍ରପତି ପରୋକ୍ଷ ନିର୍ବାଚନରେ ନିର୍ବାଚିତ ହୋଇଥାନ୍ତି । ଆମ ଦେଶର ରାଷ୍ଟ୍ରପତି ଲୋକସଭା, ରାଜ୍ୟସଭାର ନିର୍ବାଚିତ ପ୍ରତିନିଧି ଏବଂ ରାଜ୍ୟ ବିଧାନସଭାର ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଗଠିତ ନିର୍ବାଚନ ସଭା ଦ୍ୱାରା ପରୋକ୍ଷ ଭାବରେ ନିର୍ବାଚିତ ହୋଇଥାନ୍ତି । ତେବେ ଭାରତର ରାଷ୍ଟ୍ରପତି ନିର୍ବାଚନ ପୃଥିବୀର ଅନ୍ୟ କୌଣସି ରାଷ୍ଟ୍ରରେ ଏପରି ପଦ୍ଧତି ଦେଖାଯାଏନା ।

ଏଥିରେ କେବଳ ଲୋକସଭା, ରାଜ୍ୟସଭା, ବିଧାନସଭାର ନିର୍ବାଚିତ ପ୍ରତିନିଧିମାନେ କେବଳ ଭାଗ ନେଇପାରିବେ । ଆମ ଦେଶରେ ଥିବା କେନ୍ଦ୍ରଶାସିତ ଅଞ୍ଚଳର ସଦସ୍ୟମାନେ ମଧ୍ୟ ଏଥିରେ ଭାଗ ନେଇପାରିବେ ନାହିଁ । ରାଷ୍ଟ୍ରପତିଙ୍କ ପରି ସମଗ୍ର ଦେଶର ପ୍ରତିନିଧି ରୂପେ ଗ୍ରହଣ କରିବାକୁ ଭାରତୀୟ ସମ୍ବିଧାନର ଧାରା ଅନୁଯାୟୀ ଭୋଟ ଦାନର ଅଧିକାର ଦିଆଯାଇଛି । ନିରଙ୍କୁଶ ସଂଖ୍ୟାଗରିଷ୍ଠତା ହାସଲ ନ କଲେ କେହି ରାଷ୍ଟ୍ରପତି ଭାବରେ ନିର୍ବାଚିତ ହୋଇପାରିବେ ନାହିଁ । ଜଣେ ରାଷ୍ଟ୍ରପତି କେବଳ ଅତିକମ୍‌ରେ ଏକକ ହସ୍ତାନ୍ତର ଭୋଟ ଦ୍ୱାରା ୫୧ ଭାଗ ଭୋଟ ପାଇବାକୁ ହେବ ।

ଆମ ଭାରତର ପ୍ରଦେଶମାନଙ୍କରେ ଲୋକସଂଖ୍ୟା ସମାନ ନାହିଁ । ସେହି ଦୃଷ୍ଟିରୁ ବିଧାନସଭା ବା ଲୋକସଭାର ସଭ୍ୟ ସଂଖ୍ୟା ସେହି ଅନୁପାତରେ କମ୍ ବେଶୀ ରହିଛି । କ୍ଷେତ୍ରର ସମାନତା ଆଣିବା ପାଇଁ ରାଷ୍ଟ୍ରପତି ନିର୍ବାଚନରେ ରାଜ୍ୟରେ ବିଧାନସଭା ଓ ଲୋକସଭା ସଦସ୍ୟଙ୍କ ଭୋଟର ମୂଲ୍ୟ ମଧ୍ୟ ସମାନ ନୁହେଁ । ଏକ ନିର୍ଦ୍ଦିଷ୍ଟ ଗାଣିତିକ ସୂତ୍ରରେ ଏହାର ମୂଲ୍ୟ ନିର୍ଣ୍ଣୟ କରିବାକୁ ସମ୍ବିଧାନର ୫୫ ଧାରାରେ ଉଲ୍ଲେଖ କରାଯାଇଛି ଯେ,

$$\frac{\text{ରାଜ୍ୟର ଲୋକସଭା}}{\text{ରାଜ୍ୟ ବିଧାନସଭାର ସଦସ୍ୟ ସଂଖ୍ୟା}} \div ୧୦୦୦$$

ଅର୍ଥାତ୍ ଗୋଟିଏ ରାଜ୍ୟର ଜନସଂଖ୍ୟାକୁ ସେହି ରାଜ୍ୟର ବିଧାୟକମାନଙ୍କ ସଂଖ୍ୟା ଦ୍ୱାରା ଭାଗକଲେ ଯାହା ଭାଗଫଳ ରହିବ ଏହାକୁ ପୁଣିଥରେ ୧୦୦୦ ଦ୍ୱାରା ଭାଗ କରାଯିବ । ଯାହା ରହିବ ତାହା ହେବ ସେ ରାଜ୍ୟର ବିଧାୟକଙ୍କ ଭୋଟ୍‌ର ମୂଲ୍ୟ ।

ସେପରି ପ୍ରତ୍ୟେକ ନିର୍ବାଚିତ ଏମ୍.ପି.ଙ୍କର ମଧ ଭୋଟ ମୂଲ୍ୟର ପରିମାଣ ପାଇଁ ଫର୍ମୁଲା ଅଛି ।

ଏମ୍.ଏଲ୍.ଏ.ମାନଙ୍କ ଭୋଟର ମୂଲ୍ୟ

ଉଭୟ ସଦନର ନିର୍ବାଚିତ ଏମ୍.ପି.

୧୪.୩୨୫୭୬/୭୫୧ = ୫୭୬

ଭାଗଶେଷ ଯଦି ସର୍ବାଧିକ ରହିବ, ତେବେ ଭାଗଫଳରେ ଅଧିକ ଏକ ମିଶିବ । ଯଦି ଅର୍ଦ୍ଧରୁ କମ୍ ହେବ ତେବେ ତାହା ଗଣନାରେ ମିଶିପାରିବ ନାହିଁ ।

କେତେ ଭୋଟ ପାଇଲେ ଜଣେ ବ୍ୟକ୍ତି ରାଷ୍ଟ୍ରପତି ହୋଇପାରିବ ତାହାର ଏକ ଫର୍ମୁଲା ଅଛି ।

ଯେବେ ଭୋଟ ଦିଆଯାଇଛି

ରାଷ୍ଟ୍ରପତିଙ୍କ ପଦବୀ ସଂଖ୍ୟା +୧ +୧

ଅର୍ଥାତ୍ ଅଧରୁ ଏକ ଅଧିକ ଭୋଟ ପାଇଲେ ରାଷ୍ଟ୍ରପତି ନିର୍ବାଚିତ ହୋଇପାରିବ ।

ଏ ନିର୍ବାଚନରେ ଜଣେ ଭୋଟରଙ୍କୁ ପ୍ରଥମ, ଦ୍ୱିତୀୟ, ତୃତୀୟ ଏପରି ନିଜ ପସନ୍ଦ ମୁତାବକ ପ୍ରାର୍ଥୀମାନଙ୍କୁ ଭୋଟ ଦେବାକୁ ହେବ । ଗଣତି ବେଳେ ପ୍ରାର୍ଥୀ ପ୍ରଥମ ସ୍ଥାନରେ କେତେ ପାଇଛନ୍ତି, ତାହା ପ୍ରଥମେ ଦେଖାଯିବ । ଏଥିରେ କୌଣସି ପ୍ରାର୍ଥୀ ନିରଙ୍କୁଶ ସଂଖ୍ୟାଗରିଷ୍ଠ (ଅର୍ଥାତ୍ ୫୦%+୧) ଭୋଟ ପାଇ ନାହାନ୍ତି । ତେବେ ପ୍ରଥମ ପର୍ଯ୍ୟାୟରେ କାହାକୁ ନିର୍ବାଚିତ ଘୋଷଣା କରାଯିବ ନାହିଁ । ଏଠାରେ ପ୍ରତିଦ୍ୱନ୍ଦ୍ୱିତାରୁ ସର୍ବନିମ୍ନ ସଂଖ୍ୟକ ଭୋଟ ପାଇଥିବା ପ୍ରାର୍ଥୀଙ୍କୁ ବାଦ ଦିଆଯାଇ ଭୋଟରମାନଙ୍କର ଦ୍ୱିତୀୟ ପସନ୍ଦକୁ ପ୍ରଥମ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ହିସାବରେ ଯୁକ୍ତ କରାଯିବ । କୌଣସି ପ୍ରାର୍ଥୀ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ପାଇବା ପର୍ଯ୍ୟନ୍ତ ଏପରି ଦୁର୍ବଳ ପ୍ରାର୍ଥୀଙ୍କୁ ବାଦ ଦେବା ଏବଂ ସେମାନଙ୍କ ଭୋଟକୁ ଅବଶିଷ୍ଟ ପ୍ରତିଦ୍ୱନ୍ଦ୍ୱୀଙ୍କ ଭୋଟରେ ସାମିଲ କରିବା ପଦ୍ଧତି ଅବ୍ୟାହତ ରଖାଯାଏ । ଭାରତର ପଞ୍ଚମ ରାଷ୍ଟ୍ରପତି ନିର୍ବାଚନରେ ଡଃ ଭି.ଭି. ଗିରି ଏପରି ଦ୍ୱିତୀୟ ପର୍ଯ୍ୟାୟ ଭୋଟରେ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ଲାଭ କରି ବିଜୟୀ ହୋଇଥିଲେ ।

# ରାଷ୍ଟ୍ରପତି ଭବନ

ଇଂରେଜମାନେ ଯେତେବେଳେ ଭାରତ ବର୍ଷକୁ ଶାସନ କରୁଥିଲେ, ପ୍ରଥମେ ଭାରତର ରାଜଧାନୀ ଥିଲା କଲିକତା । ଲର୍ଡ଼ କର୍ଜନ ଭାରତର ବଡ଼ଲାଟ ଥିବାବେଳେ ବଙ୍ଗଭଙ୍ଗକୁ ନେଇ ତମାମ୍ ଭାରତରେ ଏକ ବିରାଟ ଆନ୍ଦୋଳନ ସୃଷ୍ଟି ହେଲା । ଏହାଫଳରେ ଆନ୍ଦୋଳନକୁ ଦମନ କରି ରାଜଧାନୀକୁ ଦିଲ୍ଲୀ ସ୍ଥାନାନ୍ତରିତ କରିବାକୁ ଇଂଲଣ୍ଡର ସମ୍ରାଟ ପଞ୍ଚମ ଜର୍ଜଙ୍କ ନିକଟରେ ପ୍ରସ୍ତାବ ଦେଲେ । ସେହି ସମୟରେ ଭାରତର ଗର୍ଭନର ଜେନେରାଲ ଥିଲେ ଲାର୍ଡ଼ ହାଡ଼ିଞ୍ଜ ।

୧୯୧୧ ଡିସେମ୍ବର ମାସ ୧୨ ତାରିଖରେ ସମ୍ରାଟ ପଞ୍ଚମ ଜର୍ଜ ଓ ରାଣୀ ମେରୀ ଭାରତ ପରିଦର୍ଶନରେ ଆସି ଲର୍ଡ଼ କର୍ଜନଙ୍କ ଯୁକ୍ତିକୁ ହୃଦୟଙ୍ଗମ କରି, କଲିକତାରୁ ରାଜଧାନୀ ସ୍ଥାନାନ୍ତରିତ କରି ଦିଲ୍ଲୀରେ ପ୍ରତିଷ୍ଠା କରିବା ପାଇଁ ଅନୁମତି ଦେଲେ ।

୧୯୧୧ ମସିହା ଡିସେମ୍ବର ମାସ ୧୫ ତାରିଖରେ ଦିଲ୍ଲୀରେ ରାଜଧାନୀର ଭିତ୍ତିପ୍ରସ୍ତର ସ୍ଥାପନା କଲେ । ଏବଂ ମି. ଏଡ୍‌ୱାର୍ଡ଼ ଲ୍ୟୁଟିନଙ୍କ ପରିକଳ୍ପିତ ନକ୍ସା ଅନୁଯାୟୀ ଦିଲ୍ଲୀ ନଗରୀରେ ଭାରତର ରାଜଧାନୀ ତିଆରି ହେଲା । ଇଂରେଜମାନେ ଭାରତକୁ ଶାସନ



କରୁଥିଲେ । ଏହାର ମୁଖ୍ୟଙ୍କୁ ଭାଇସରାୟ କୁହାଯାଏ । ଭାଇସ୍‌ରାୟଙ୍କ ସରକାରୀ ବାସଭବନକୁ ରାଜଧାନୀର ମୁଖ୍ୟ ସରକାରୀ ଭବନ ବୋଲି କୁହାଯାଏ । ଯେତେବେଳେ ଦିଲ୍ଲୀରେ ରାଜଧାନୀ ତିଆରି ହେଲା ଭାଇସ୍‌ରାୟଙ୍କ ସରକାରୀ ଭବନକୁ ମଧ ଦିଲ୍ଲୀ ସ୍ଥାନାନ୍ତରିତ କରାଗଲା ।

ମି : ଲ୍ୟୁଟ୍ରିନଙ୍କର ଇଚ୍ଛା ଭାରତୀୟମାନେ ଅନେକ ଦୂରରୁ ତାଙ୍କର ଶାସନ ମୁଖ୍ୟଙ୍କ ସରକାରୀ ବାସଭବନକୁ ସହଜରେ ଦେଖିପାରିବେ । ଲ୍ୟୁଟ୍ରିନ ଅନେକ ଖୋଜାଖୋଜି କରିବା ପରେ ଦିଲ୍ଲୀର ବାୟୁସେନା ପାହାଡ଼ ଉପରେ ଭାଇସ୍‌ରାୟଙ୍କ ସରକାରୀ ବାସ ଭବନ ନିର୍ମାଣ କରାଯାଇଥିଲା ।

୧୯୪୭ ମସିହା ଅଗଷ୍ଟ ୧୫ରେ ଭାରତ ହେଲା ସ୍ୱାଧୀନ । ଇଂରେଜମାନେ ଆମ ଦେଶରୁ ଚାଲିଗଲେ । ହେଲେ ସେମାନଙ୍କ ଦ୍ୱାରା ନିର୍ମାଣ କରାଯାଇଥିବା ଅନେକ ସରକାରୀ ଭବନ ଆମ ପାଖରେ ରହିଗଲା ଓ ଆମ ପ୍ରଶାସନମାନଙ୍କର ମୁଖ୍ୟ ଦପ୍ତରରେ ପରିଣତ ହୋଇଗଲା । ସେଦିନର ଭାଇସ ରାୟଙ୍କ ସରକାରୀ ବାସଭବନ ସ୍ୱାଧୀନ ଭାରତର ସାମ୍ବିଧାନିକ ମୁଖ୍ୟ ରାଷ୍ଟ୍ରପତି ଭବନ ଭାବରେ ପରିଚିତ ହେଲା ।

ମି: ଲ୍ୟୁଟ୍ରିନଙ୍କ ନକ୍ସା ଅନୁଯାୟୀ ୧୯୨୧ ମସିହାର ଏହି ରାଷ୍ଟ୍ରପତି ଭବନ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ୧୯୨୯ରେ ସଂପୂର୍ଣ୍ଣ ହୋଇଥିଲା । ସେ ସମୟରେ ୧୪ କୋଟି ଟଙ୍କା ବ୍ୟୟରେ ଅନ୍ୟୂନ ପାଞ୍ଚ ହଜାର ଶ୍ରମିକଙ୍କ ଅକ୍ଳାନ୍ତ ପରିଶ୍ରମ କରି ଏ ରାଷ୍ଟ୍ରପତି ଭବନ ନିର୍ମାଣ କରିଥିଲେ । ୩୩ୀ ଏକର ଜମି ଉପରେ ଏ ଭବନଟି ନିର୍ମାଣ କରାଯାଇଛି । ଦୂରରୁ ଏତାକୁ ଲକ୍ଷ୍ୟକଲେ ଠିକ୍ ଇଂରାଜୀ ଅକ୍ଷର ଏଚ. ଭଳି ଦିଶିବ । ଏହାର ମୁଖ୍ୟ ପ୍ରବେଶଦ୍ୱାରରେ ରହିଚି ଏକ ସୁଉଚ୍ଚ ସିଡ଼ି । ୩୨ଟି ପାବଛ ଅତିକ୍ରମ କରିବା ପରେ ପଡ଼ିବ ଦରବାର ହଲ୍ । ରାଷ୍ଟ୍ରପତି ଭବନ ବାରଣ୍ଡାର ଦୈର୍ଘ୍ୟ ଦେଢ଼ ମାଇଲି । ସେଠାରେ ଏକକାଳିନ ୫ ହଜାର ଦର୍ଶକ ବସିପାରିବେ । ସେଠାରେ ଭାରତର ରାଷ୍ଟ୍ରପତିମାନେ ଶପଥ ନେଇଥାନ୍ତି ।

ରାଷ୍ଟ୍ରପତି ଭବନର ଚାରିପାଖରେ ରହିଛି ୪୦୦ ଏକର କ୍ଷେତ୍ରଫଳର ସବୁଜ ଉଦ୍ୟାନ । ଏହାକୁ ମୋଗଲ ଉଦ୍ୟାନ କୁହନ୍ତି ରାଷ୍ଟ୍ରପତି ଭବନରେ ଥିବା ରୋଷେଇଶାଳରେ ଏକ ସମୟରେ ୧ ହଜାର ଲୋକଙ୍କ ଭୋଜନ ପ୍ରସ୍ତୁତ କରାଯାଇଥାଏ । ତଳ ମହଲାରେ ରହିଛି ବରଫ କକ୍ଷ । ଭବନ ମଧ୍ୟରେ ଦୁଇ ଗୋଟି ପ୍ରେକ୍ଷାଳୟ ରହିଛି । ଏଠାରେ ଥିବା ଲଣ୍ଡ୍ରିରେ ଦିନକୁ ୮ ହଜାର ଖଣ୍ଡ ଲୁଗା ସଫା କରାଯାଏ । ଭବନରେ ୧୮୫୦ ଜଣ

କର୍ମଚାରୀ ରହିଛନ୍ତି । ଏମାନଙ୍କ ପୁଅଝିଅ ମାନେ ପାଠ ପଢ଼ିବା ପାଇଁ ରହିଛି ସ୍କୁଲ ।

ପ୍ରସିଦ୍ଧ ଚିତ୍ରକର ଏମ.ଏଫ୍. ହୁସେନଙ୍କ ଦ୍ୱାରା ଆଙ୍କିତ ଗୋଟିଏ ଦୁଇ କୋଟି ଟଙ୍କା ମୂଲ୍ୟର ତିରୁପତି ମନ୍ଦିରର ପ୍ରତିକୃତି ରାଷ୍ଟ୍ରପତିଙ୍କ ପରିବାର କୋଠରୀର ପ୍ରବେଶ ଦ୍ୱାରରେ ସ୍ଥାପନ କରାଯାଇଛି । ରାଷ୍ଟ୍ରପତି ଦିନକୁ ପ୍ରାୟ ୧୦ଟି ଫାଇଲରେ ଦସ୍ତଖତ କରନ୍ତି । ଅତିଥିମାନଙ୍କୁ ରାଷ୍ଟ୍ରମୁଖ୍ୟ ଭେଟିବା ପାଇଁ ଦର୍ଶକମାନଙ୍କ ପାହ୍ୟା ଦେଖି, ବିଭିନ୍ନ ପର୍ଯ୍ୟାୟରେ ଅଲଗା ଅଲଗା ପ୍ରକୋଷ୍ଠରେ ସାକ୍ଷାତ ହୋଇଥାନ୍ତି । ବାହାର ଦେଶର ରାଷ୍ଟ୍ର ମୁଖ୍ୟ ଆସିଲେ ତାଙ୍କ ସମ୍ମାନାର୍ଥେ ନୈଶ୍ୟ ଭୋଜୀ ଏବଂ ସରକାରୀର ମୁଖ୍ୟ ବା ପ୍ରଧାନମନ୍ତ୍ରୀ ଆଦି ଆସିଲେ ସେମାନଙ୍କ ସମ୍ମାନାର୍ଥେ ମଧ୍ୟାହ୍ନ ଭୋଜୀ ରାଷ୍ଟ୍ରପତି ଦେବାର ପରମ୍ପରା ରହିଛି ।

ରାଷ୍ଟ୍ରପତି ଭବନରେ ବିଭିନ୍ନ ପ୍ରକୋଷ୍ଠକୁ ଭିନ୍ନ ଭିନ୍ନ ନାମରେ ନାମିତ କରାଯାଇଛି । ସେଥିମଧ୍ୟରେ ଦ୍ୱାରିକା, ନାଳନ୍ଦା, ମହୀଶୂର, ଟାଗୋର ଆଦି ପ୍ରକୋଷ୍ଠ ଅନ୍ୟତମ ।

ରାଷ୍ଟ୍ରପତି ଭବନରେ ଅନେକ ଗାଡ଼ି ବ୍ୟବହାର ହୋଇଥାଏ । ସେଥିମଧ୍ୟରୁ ୬ଟି ଦ୍ୱାର ଥିବା ବିଶିଷ୍ଟ ମର୍ଷିଡ଼େସ ଗାଡ଼ିଟିଏ ରହିଛି । ଏତା ବର୍ଷକରେ ଦିନଟିଏ (ଯେଉଁଦିନ ପାର୍ଲିଆମେଣ୍ଟକୁ ଆସି ରାଷ୍ଟ୍ରପତି ବଜେଟ ଅଧିବେଶନ ଉଦ୍‌ଘାଟନ କରନ୍ତି) ଏ ଗାଡ଼ି ବ୍ୟବହାର କରନ୍ତି । ରାଷ୍ଟ୍ରପତି ଭବନରୁ ପାର୍ଲିଆମେଣ୍ଟ ମାତ୍ର ୧୦୦ ଗଜ ଦୂର ।

ରାଷ୍ଟ୍ରପତିଙ୍କୁ ଜନରାଜ୍ୟ ଦିବସରେ ଘୋଡ଼ାଗାଡ଼ିରେ ନେବାପାଇଁ ୧୫୦ଟି ଘୋଡ଼ା ରାଷ୍ଟ୍ରପତି ଭବନ ପରିସର ମଧ୍ୟରେ ପୋଷା ହୋଇ ରହିଛନ୍ତି ।

ରାଷ୍ଟ୍ରପତି ଭବନ ଇଂରେଜମାନଙ୍କ ଦ୍ୱାରା ନିର୍ମିତ ହୋଇଥିବାରୁ ଏହା ଏକ ପ୍ରକାର ବିଳାସର ପ୍ରସାଦ କହିଲେ ଭୁଲ୍ ହେବନି । ସେଥିପାଇଁ ୧୯୪୭ ମସିହା ଜୁଲାଇ ମାସ ୨୮ ତାରିଖରେ ଜାତିର ଜନକ ମହାତ୍ମା ଗାନ୍ଧି ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ନିକଟକୁ ଏକ ପତ୍ର ଲେଖିଥିଲେ, ଯେ ରାଷ୍ଟ୍ରପତି ଭବନ ହେଉଛି ଏକ ବିଳାସର କ୍ଷେତ୍ର ।

ଭବିଷ୍ୟତରେ ଏହାର ପରିଚାଳନା କ୍ଷେତ୍ରରେ ଅସୁବିଧା ଦେଖା ଦେଇପାରେ । ଏଣୁ ଏହାକୁ ତୁରନ୍ତ ପରିବର୍ତ୍ତନ କରି ଏହି ଭବନକୁ ଏକ ହାସପାତାଳରେ ପରିଣତ କରିଦେଲେ ଭଲ ହୁଅନ୍ତା । ହେଲେ ନେହେରୁ କି ତାଙ୍କ ମନ୍ତ୍ରିମଣ୍ଡଳ ଏ ପ୍ରସ୍ତାବକୁ ଗ୍ରହଣ କରିନଥିଲେ ।



ମି. ଏଡ୍‌ୱାର୍ଡ଼ ଲ୍ୟୁଟିନ୍

ରାଷ୍ଟ୍ରମୁଖ୍ୟ ରାଷ୍ଟ୍ରପତି ଭବନରେ ଏବେବି ରାଷ୍ଟ୍ରପତି ରୁହନ୍ତି ଓ ଏହା ଉପରେ ଜାତିର ନିଶାଣ, ନାଲି ଧଳା, ସବୁଜ ରଙ୍ଗର ତ୍ରିରଙ୍ଗା ପତାକା ଉଡୁଛି ।

# ରାଷ୍ଟ୍ରପତି ଶାସନ

ଦେଶରେ ଅରାଜକତା, ଅଭ୍ୟନ୍ତରୀଣ ଗଣ୍ଡଗୋଳ, ବହି ଶତ୍ରୁ ଆକ୍ରମଣ କିମ୍ବା ଯୁଦ୍ଧ ଆଦି ସମୟରେ ଦରକାର ହେଲେ ଦେଶରେ ରାଷ୍ଟ୍ରପତି ଶାସନ ଜାରି କରିଥାନ୍ତି । ସେହିପରି କୌଣସି ରାଜ୍ୟରେ ଶାସନଗତ କିମ୍ବା ସାମ୍ବିଧାନିକ ବ୍ୟବସ୍ଥାର ବିଫଳତା ହେଲେ ସେହି ରାଜ୍ୟର କେନ୍ଦ୍ରଶାସିତ ଅଞ୍ଚଳରେ ରାଷ୍ଟ୍ରପତି ଏକ ନିର୍ଦ୍ଦେଶନାମା ଜାରି କରିଥାନ୍ତି । ଏହାକୁ ରାଷ୍ଟ୍ରପତି ଶାସନ କୁହାଯାଏ । ସମ୍ବିଧାନର ୩୫୬ ଧାରା ଅନୁଯାୟୀ ରାଷ୍ଟ୍ରପତି ଏକ ହୁକୁମନାମା ଜାରି କରନ୍ତି ଓ ଉକ୍ତ ରାଜ୍ୟର ଶାସନ ଭାର ନିଜ ହାତକୁ ନେଇଯାନ୍ତି ।

ଆମ ଓଡ଼ିଶାରେ ୧୯୩୯ ନଭେମ୍ବର ୬ ତାରିଖରେ ଲାଟ ଶାସନ (ସେତେବେଳେ ଦେଶ ସ୍ୱାଧୀନ ହୋଇନଥିଲା) ଏହା ପରେ ୧୯୪୧ରେ ମଧ୍ୟ ଲାଟ ଶାସନ ଜାରି ହୋଇଥିଲା । ଦେଶ ସ୍ୱାଧୀନ ହେବା ପରେ ୧୯୬୧, ୧୯୭୧, ୧୯୭୩, ୧୯୭୬, ୧୯୭୭ ଓ ୧୯୮୦ରେ ମୋଟ ୬ ଥର ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା । ଏହି ସମୟ ମଧ୍ୟରେ ପ୍ରଦେଶର ରାଜ୍ୟପାଳମାନେ ମୁଖ୍ୟତଃ ରାଷ୍ଟ୍ରପତିଙ୍କ ପ୍ରତିନିଧି ଭାବରେ ସିଧାସଳଖ କାର୍ଯ୍ୟ କରିଥାନ୍ତି ଓ ମନ୍ତ୍ରିମଣ୍ଡଳକୁ ଭାଙ୍ଗି ଦିଆଯାଇଥାଏ ।

ଭାରତରେ ରାଷ୍ଟ୍ରପତି ଶାସନ ୧୯୮୦ରେ ଶେଷଥର ପାଇଁ ଜାରି କରାଯାଇଥିଲା । ଏହାକୁ ଜାତୀୟ ଜରୁରୀକାଳୀନ ପରିସ୍ଥିତି କୁହାଯାଏ । ଏହି ସମୟ ମଧ୍ୟରେ ନାଗରିକର ମୌଳିକ ଅଧିକାରକୁ ଦେଶର ହିତ ପାଇଁ ସଂକୁଚିତ କରାଯାଇଥାଏ ।



# ଡଃ ରାଜେନ୍ଦ୍ର ପ୍ରସାଦ

(କାର୍ଯ୍ୟକାଳ ସମୟ - ୧୯୫୦ ଜାନୁୟାରୀ ୨୬ - ୧୯୬୨ ମଇ ୧୩)

ବର୍ଷାଋତୁ ହୋଇଥାଏ । ମୁଷଳଧାରାରେ ବର୍ଷା ବର୍ଷି ଚାଲିଥାଏ । ଯେଉଁଆଡ଼କୁ ଚାହିଁବ ଖାଲି ପାଣି । ଲୋକମାନେ ଅତିଷ୍ଠ ହୋଇଗଲେଣି । ଏପଟେ ପୁଣି ଇଂରେଜମାନଙ୍କର ଚଡ଼ାଉ । ସତ୍ୟାଗ୍ରହୀମାନଙ୍କ ଉପରେ ଲାଠି ପାହାର । ଇଂରେଜମାନଙ୍କୁ ଭାରତରୁ ତଡ଼ିବା ପାଇଁ ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଉଲ୍ଲାକ୍ତ ସଂଗ୍ରାମ । ବାପୁଜୀଙ୍କ ଅସହଯୋଗ ଆନ୍ଦୋଳନ ଠିକ୍ ସେତିକିବେଳେ ଖୁବ୍ ଯୋର ଦାର ତେଜି ଉଠିଥାଏ । ଭାରତର ୬୦ କୋଟି ଜନତା ସ୍ୱାଧୀନତା ପାଇଁ ପାଗଳ ହୋଇ ଉଠିଥାନ୍ତି ।

ବିହାରର ଏକ ଛୋଟିଆ ଗାଁ ତ୍ରିପୁରା । ସେ ବି ଏଥିରୁ ବାଦ ପଡ଼ିନଥାଏ । ସେଠାରେ ଗାନ୍ଧିଜୀଙ୍କ ଆହ୍ୱାନରେ ସତ୍ୟାଗ୍ରହ ଆନ୍ଦୋଳନ ଖୁବ୍ ଜୋର୍‌ରେ ଚାଲିଥାଏ । ମଦ, ଗଞ୍ଜେଇ ଦୋକାନ ଆଗରେ ପିକେଟିଂ ଚାଲିଥାଏ । ଦୋକାନ ଆଗରେ ଧାରଣା ଦେଉଥିବା ସତ୍ୟାଗ୍ରହୀମାନଙ୍କୁ ଗିରଫ କରାଯାଉଥାଏ । ତଥାପି ଆନ୍ଦୋଳନ କମିବାର ନାହିଁ ବରଂ ବେଳକୁ ବେଳ ଆନ୍ଦୋଳନ ବଢୁଥାଏ । ଜଣେ ସତ୍ୟାଗ୍ରହୀ ଗିରଫ ହେବା ବେଳକୁ ଶହ ଶହ ସତ୍ୟାଗ୍ରହୀ ଆନ୍ଦୋଳନରେ ସାମିଲ ହୋଇଥାନ୍ତି । ଇଂରେଜମାନଙ୍କ ଲାଠି, ବନ୍ଧୁକ ଏ ସବୁକୁ ତାଙ୍କର ଭୟ ନାହିଁ । ସେମାନଙ୍କର ଗୋଟିଏ ଲକ୍ଷ୍ୟ "ଗୋରା ସିପାହୀ ତୁମେ ଭାରତ ଛାଡ଼ ।"

ଏମାନଙ୍କର ନେତୃତ୍ୱ ନେଇଥାନ୍ତି ଜଣେ ଭାରତୀୟ ନେତା । ଶହ ଶହ ସତ୍ୟାଗ୍ରହୀମାନଙ୍କୁ ମେଳି କରି ଆନ୍ଦୋଳନ ଚଳାଇଥାନ୍ତି ।

ଉପରୁ ଅର୍ଡ଼ର ଆସିଲା ଆଖିବୁଜି ଗୁଳି ଚଳା । ସେମାନଙ୍କ ନେତୃତ୍ୱ ନେଉଥିବା

ଲୋକଟାକୁ ବାନ୍ଧିଆଣ । ଗୋରା ସିପାହୀମାନେ ପଶୁ ପାଲଟିଗଲେ । ଆଖିବୁଜି ଚଳାଇଲେ ଗୁଳି । ନାଁ, ତଥାପି ସତ୍ୟାଗ୍ରହୀମାନଙ୍କର ଭୟ ନାହିଁ । ସେମାନଙ୍କ କଣ୍ଠରେ ସେଇ ଗୋଟିଏ କଥା ''ଗୋରା ସିପାହୀ ତୁମେ ଭାରତ ଛାଡ଼ ।'' ଆଶ୍ଚର୍ଯ୍ୟ ହୋଇଗଲେ ସେଦିନ ଗୋରା ସିପାହୀ, ତ୍ରିପୁରା ଗାଁ ଲୋକଙ୍କ ଦେଶ ପ୍ରେମ ଦେଖି । କାରଣ ସେମାନେ ଜୀବନ ଠାରୁ ମା' ମାଟିକୁ ବେଶୀ ଭଲ ପାଉଥିଲେ ।

ନେତୃତ୍ୱ ନେଉଥିବା ନେତା କର୍ମୀମାନଙ୍କୁ ଉତ୍ସାହିତ କରିବା ପାଇଁ ଉଦ୍‌ବୋଧନ ଦେଉଥାନ୍ତି ।

''ବିଦେଶୀ ଜିନିଷ ବର୍ଜନ କର, ଗୋରା ସିପାହୀ ତୁମେ ଭାରତ ଛାଡ଼ ।''

ଗୋରା ସିପାହୀ ଶେଷରେ ସେଇ ନେତାଙ୍କୁ ଗିରଫ କରିନେଲେ । ସେ ଦିନର ଗିରଫ ହୋଇଥିବା ନେତା ଜଣଙ୍କ ହେଉଛନ୍ତି ଆମ ଚିର ପରିଚିତ ଭାରତର ପ୍ରଥମ ରାଷ୍ଟ୍ରପତି ସ୍ୱାଧୀନତା ସଂଗ୍ରାମୀ ଡଃ ରାଜେନ୍ଦ୍ର ପ୍ରସାଦ ।

୧୮୮୪ ମସିହା ଡିସେମ୍ବର ତିନି ତାରିଖ, ବିହାର ପ୍ରଦେଶର ଶରନ ଜିଲ୍ଲାରେ ଜିରାଦଇ ଗ୍ରାମରେ ରାଜେନ୍ଦ୍ର ପ୍ରସାଦଙ୍କ ଜନ୍ମ । ତାଙ୍କ ବାପା ମୁନ୍‌ସି ମହାଦେବ ଜଣେ ପାର୍ଶି ତଥା ସଂସ୍କୃତ ପଣ୍ଡିତ ଥିଲେ ଏବଂ ରାଜେନ୍ଦ୍ର ପ୍ରସାଦ ଥିଲେ କନିଷ୍ଠ ସନ୍ତାନ । ରାଜେନ୍ଦ୍ରଙ୍କ ବାପା ଥିଲେ ସାଧାରଣ କୃଷକ ଓ ଚାଷବାସ ହିଁ ଥିଲା ପ୍ରଧାନ ଜୀବିକା । ଏହାଛଡ଼ା ଜଣେ ଆୟୁର୍ବେଦିକ ଚିକିତ୍ସକ ରୂପେ ତାଙ୍କର ଖ୍ୟାତି ଯୋର ଥିଲା ।

ମାଆ ତାଙ୍କର ଜଣେ ଧର୍ମପ୍ରାଣା ମହିଳା ଥିଲେ । ନୀତି ପୁରାଣ, ରାମାୟଣ ପାଠ କରନ୍ତି । ପିଲାଟି ବେଳୁ ରାଜେନ୍ଦ୍ର ମାଆଙ୍କ ଠାରୁ ପୁରାଣ, ମହାଭାରତ, ରାମାୟଣ କାହାଣୀ ଶୁଣି ଶୁଣି ପ୍ରଭାବିତ ହୋଇଗଲେ । ମନରେ ତାଙ୍କର ଧର୍ମଭାବ, ଦେଶପ୍ରେମ ଓ ବୀରପଣିଆ ଖେଳି ଯାଇଥାଏ ।

ଜିରାଦଇ ଗାଁରେ କୌଣସି ବିଦ୍ୟାଳୟ ନଥିଲା । ତେଣୁ ରାଜେନ୍ଦ୍ରଙ୍କୁ ପ୍ରାଥମିକ ଶିକ୍ଷା ଦେବାକୁ ତାଙ୍କ ବାପା ଜଣେ ପଣ୍ଡିତଙ୍କୁ ନିଯୁକ୍ତ ଦେଇଥିଲେ । ଏହାପରେ ଘର ଠାରୁ ୩୫ କି.ମି. ଦୂର ଛାପ୍ରା ହାଇସ୍କୁଲରେ ପଢ଼ିବାକୁ ହେଲା । ପିଲାଟି ଦିନରୁ ରାଜେନ୍ଦ୍ର ଥିଲେ ମେଧାବୀ ଓ ଚତୁର । ଏଥିପାଇଁ ପ୍ରଥମ ବର୍ଷ ଏପରି ଭଲ ପଢ଼ିଲେ ଯେ, ତାଙ୍କୁ ଡବଲ ପ୍ରମୋଶନ ମିଳିଥିଲା । ପ୍ରତିବର୍ଷ ସେ ଶ୍ରେଣୀ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ମାଟ୍ରିକ୍ ପାଶ୍ ପୂର୍ବରୁ ମାତ୍ର ୧୩ ବର୍ଷ ବୟସରେ ରାଜେନ୍ଦ୍ରଙ୍କୁ ବିବାହ କରିବାକୁ ପଡ଼ିଥିଲା । ସେତେବେଳେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥିଲା । ସେ ରାଜବଂଶୀ ଦେବୀଙ୍କୁ ବିବାହ କରିଥିଲେ ।

୧୯୦୨ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ରାଜେନ୍ଦ୍ର ପ୍ରସାଦ ମାଟ୍ରିକ୍ ପାଶ୍ କଲେ ।

ଏହାପରେ ପ୍ରେସିଡ଼େନ୍ସି କଲେଜରେ ନାମ ଲେଖାଇଲେ । ଏଫ୍.ଏ. ପରୀକ୍ଷା ପୂର୍ବରୁ ପ୍ରବେଶିକା ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କଲେ । ହେଲେ ତାଙ୍କର ନାମ ଭୁଲବଶତଃ ପାଶ୍ ତାଲିକାରେ ବାହାରି ନଥିଲା, ଏକଥା ଦେଖି ରାଜେନ୍ଦ୍ର ଆଶ୍ଚର୍ଯ୍ୟ ହୋଇଗଲେ । ସେ ସାଥେ ସାଥେ ଯାଇ ଅଧକ୍ଷଙ୍କ ଆଗରେ ଆପତ୍ତି କଲେ । ଆଜ୍ଞା କ'ଣ ପାଇଁ ମୋ ନାଁ ପାଶ୍ ତାଲିକାରେ ବାହାରିନାହିଁ । ଅଧକ୍ଷ ଜଣଙ୍କ ଥିଲେ ଗୋରା ସାହେବ । ସେ ଭିଷଣ ରାଗିଗଲେ ଓ ସାଥେ ସାଥେ ୫ ଟଙ୍କା ଜୋରିମାନା କଲେ । ଜୋରିମାନା କ'ଣ ପାଇଁ ଏକଥା ପ୍ରଶ୍ନ କରିବାରୁ ଅଧକ୍ଷ ପୁନର୍ବାର ୧୦ ଟଙ୍କା ଜୋରିମାନା କଲେ । ରାଜେନ୍ଦ୍ର ରାଗିଉଠି କହିଲେ, ଆପଣଙ୍କୁ ମୁଁ ପ୍ରଶ୍ନ ପଚାରୁଛି ଆପଣ ମୋତେ ଜୋରିମାନା କରୁଛନ୍ତି । ନାଁ ମୁଁ ଜୋରିମାନା ଦେବିନି । ଅଧକ୍ଷ ଭୀଷଣ ରାଗିଉଠି କହିଲେ ତୁମକୁ ୨୦ ଟଙ୍କା ଜୋରିମାନା ଦେବାକୁ ହେବ । ରାଜେନ୍ଦ୍ର କହିଲେ, ମୁଁ କୋଡ଼ିଏ ଟଙ୍କା ତ ଦୂରର କଥା କୋଡ଼ିଏ ପଇସା ବି ଦେବିନି ।

ରାଜେନ୍ଦ୍ର ଫେରିଗଲେ, ଧର୍ଯ୍ୟର ସହ ଅପେକ୍ଷା କଲେ । ଶିକ୍ଷା ବିଭାଗର ଉପର ସ୍ତରରୁ ଚିଠି ଆସିଲା, ରାଜେନ୍ଦ୍ର ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାଶ୍ କଲେ ଏବଂ ପରେ ତାଙ୍କ ଉପରେ ଲାଗୁ ହୋଇଥିବା ଜୋରିମାନା ଉଠାଇ ନିଆଗଲା ।

ତାଙ୍କର ବଡ଼ଭାଇ ମହେନ୍ଦ୍ର ପ୍ରସାଦଙ୍କ ଅବଦାନ ରାଜେନ୍ଦ୍ରଙ୍କ ଉଚ୍ଚଶିକ୍ଷା ପାଇଁ ମହତ୍ତର ଥିଲା । ସେ ପାଠ ଯୋଗୁଁ ବଡ଼ଭାଇଙ୍କୁ ଗୁରୁ ବୋଲି ଭକ୍ତି କରୁଥିଲେ । ବଡ଼ଭାଇ ରାଜେନ୍ଦ୍ରଙ୍କୁ ପାରିବାରିକ ଜଞ୍ଜାଳରୁ ଦୂରରେ ରଖି ଉନ୍ନତ ଜୀବନ ଗଠନ ପାଇଁ ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦେଇଥିଲେ ।

ପ୍ରତି ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ଛାତ୍ର ସଂସଦ ନିର୍ବାଚନରେ ବାରମ୍ବାର ସେକ୍ରେଟାରୀ ରୂପେ ନିର୍ବାଚିତ ହୋଇଥିଲେ । ୧୯୦୬ରେ ସେ ବି.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାଶ୍ କରିଥିଲେ । ୧୯୦୮ରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍.ଏ. ପାଶ୍ କଲେ । ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନଟା ଉପରେ ତାଙ୍କର ଥିଲା ଏକଚାଟିଆ ଅଧିକାର । ୧୯୧୦ରେ ସେ ଓକିଲାତି ପାଶ୍ କରି କଲିକତା ହାଇକୋର୍ଟରେ କିଛିଦିନ ପାଇଁ ଓକିଲାତି ଆରମ୍ଭ କଲେ । ଏହାରି ଭିତରେ କିଛିଦିନ ପାଇଁ ଅଧ୍ୟାପକ ଜୀବନ ମଧ୍ୟ ଆରମ୍ଭ କରିଥିଲେ । ପଥରେ ସିଟି କଲେଜରେ ଅଧ୍ୟାପକ ରହିଲେ । ଆଇନି ଶାସ୍ତ୍ରରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା ।

ତେଣୁ ଏଲ୍ହାବାଦ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନଜନକ ଡକ୍ଟର ଅଫ୍ ଲ ଉପାଧି ପ୍ରଦାନ କରିଥିଲା । ଯାହାଫଳରେ ସେ ଦିନରୁ ସେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ରୂପେ ପରିଚିତ ।

୧୯୧୨ ବିହାର, ଓଡ଼ିଶା, ବଙ୍ଗପ୍ରଦେଶରୁ ଅଲଗା ହୋଇଗଲା ଓ ପାଟନା ହେଲା ଏ ନୂତନ ପ୍ରଦେଶର ରାଜଧାନୀ । ପାଟନାରେ ହାଇକୋର୍ଟ ଖୋଲିବାରୁ ରାଜେନ୍ଦ୍ର ପ୍ରସାଦ ପାଟନା ହାଇକୋର୍ଟରେ ଓକିଲାତି ଆରମ୍ଭ କଲେ । ୧୯୧୮ରେ ଗାନ୍ଧିଜୀଙ୍କ ସହ ରାଜେନ୍ଦ୍ର ପ୍ରସାଦଙ୍କର ପ୍ରଥମ ସାକ୍ଷାତ ହୋଇଥିଲା ଚମ୍ପାରଣ ଜିଲ୍ଲାରେ । ଗାନ୍ଧିଜୀଙ୍କ ସହ ମାତ୍ର କେଇଟି ମିନିଟ୍ କଥାବାର୍ତ୍ତାରରେ ସେ ଦେଶ ପାଇଁ ସେବା କରିବାର ନିଷ୍ପତ୍ତି ନେଇଥିଲେ । ଓକିଲାତି ଆଉ ପଇସା ରୋଜଗାର କରିବାର ନିଶା ତାଙ୍କର ଏକାଥରକେ ତୁଟି ଯାଇଥିଲା । ସେ ସମୟରେ ବାଳ ଗଙ୍ଗାଧର ତିଳକଙ୍କ ଡାକରାରେ 'ସ୍ୱରାଜ୍ୟ ଆମର ଜନ୍ମଗତ ଅଧିକାର'' ସେ ଆନ୍ଦୋଳନ ୧୯୧୯ ଅପ୍ରେଲ ୧୬ରେ ଭାରତ ସାରା ହରତାଳ ପାଳିତ ହେଲା । ୧୯୨୦ ଅଗଷ୍ଟ ପହିଲାରେ ତିଳକଙ୍କ ମୃତ୍ୟୁରେ ରାଜେନ୍ଦ୍ର ପ୍ରସାଦଙ୍କ ଅଧକ୍ଷତାରେ ପାଟନାରେ ଜାତୀୟ କଲେଜ ପ୍ରତିଷ୍ଠା ହେଲା । ଏହି ସମୟରେ ରାଜେନ୍ଦ୍ର ପ୍ରସାଦ 'ସାପ୍ତାହିକୀ', 'ଦେଶ', ଓ 'ସଚଲାଇଟ୍' ଇଂରାଜୀ ପାକ୍ଷିକ ପ୍ରକାଶ କରିଥିଲେ ।

ସରକାର ୧୯୨୭ରେ ସାଇମନ କମିଶନ ନିଯୁକ୍ତି କରି ଭାରତକୁ ପଠାଇଲେ । ଭାରତର ରାଜନୈତିକ ପରିସ୍ଥିତିକୁ ବିଚାର କରି ଏହାର ସଂଶୋଧନ କରିବା ଥିଲା ଏ କମିଶନର ମୁଖ୍ୟ ଉଦ୍ଦେଶ୍ୟ । ଏ କମିଶନ ମଧ୍ୟ ଭାରତୀୟମାନଙ୍କ ସ୍ୱାଧୀନତା ପ୍ରାପ୍ୟ ବିଷୟରେ ତଦାରଖ କରିବା ପାଇଁ କମିଶନ ଘୋଷଣା କଲା । ଜାତୀୟ କଂଗ୍ରେସ ଏହା ଭାରତୀୟମାନଙ୍କ ପାଇଁ ଅପମାନ ବୋଲି କହି ବିରୋଧ କଲା । ସାଇମନ କମିଶନ ୧୯୨୮ ଫେବୃୟାରୀରେ ଭାରତ ଆସିଲେ । ଏଥିପାଇଁ ସାରା ଦେଶରେ ହରତାଳ ପାଳିତ ହେଲା । ରାଜେନ୍ଦ୍ର ପ୍ରସାଦ ପାଟନାର ଗଣବିକ୍ଷୋଭର ନେତୃତ୍ୱ ନେଲେ ।

୧୯୩୧ରେ ଅନୁଷ୍ଠିତ ଗୋଲଟେବୁଲ ବୈଠକରେ ଗାନ୍ଧିଜୀ ଯୋଗ ଦେଇଥିଲେ । ସେଥିରେ ଅନୁମୋଦିତ ନିଷ୍ପତ୍ତିରେ ଗାନ୍ଧିଜୀ ସମ୍ମତି ପ୍ରକାଶ ନ କରିବାରୁ ପୁଣି ଆନ୍ଦୋଳନ ଆରମ୍ଭ ହେଲା । ଫଳରେ ୧୯୩୨ ଜାନୁୟାରୀରେ ଅନ୍ୟ ନେତାମାନଙ୍କ ସହ ରାଜେନ୍ଦ୍ର ପ୍ରସାଦ ପୁଣି ଥର ବନ୍ଦି ହେଲେ । ୧୯୩୪ରେ ରାଜେନ୍ଦ୍ର ପ୍ରସାଦ କଂଗ୍ରେସ ଅଧିବେଶନରେ ସଭାପତି ହେଲେ । ୧୯୩୫ରେ ଭାରତ ଆଇନ ଅନୁସାରେ ନିର୍ବାଚନ ପାଇଁ ପ୍ରସ୍ତୁତ ହେଲେ ଓ ଏଥିପାଇଁ ଗଠିତ ସଂସଦୀୟ କାର୍ଯ୍ୟକ୍ରମ ପାଇଁ ପ୍ରଥମ କରି ସଂସଦୀୟ କମିଟି ସର୍ଦ୍ଦାର ପଟେଲ, ରାଜେନ୍ଦ୍ର ପ୍ରସାଦ ଏବଂ ମୌଲାନା ଆଜାଦଙ୍କୁ ନେଇ ଗଠିତ ହେଲା ।

ନେତାଜୀ କଂଗ୍ରେସ ସଭାପତି ହେବାପରେ ମତପାର୍ଥକ୍ୟ ଦେଖାଗଲା, ଅନେକ

କର୍ମୀ ନେତାଜୀଙ୍କୁ ସମାଲୋଚନା କଲେ । ନେତାଜୀ କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେଲେ ଏହାପରେ ରାଜେନ୍ଦ୍ର ପ୍ରସାଦ ଜାତୀୟ କଂଗ୍ରେସର ସଭାପତି ଭାବରେ ନିର୍ବାଚିତ ହେଲେ ।

୧୯୩୨ରେ ଲବଣ ସତ୍ୟାଗ୍ରହ ଆନ୍ଦୋଳନକୁ ଜୋର୍‌ଦାର ଚଳାଇ ଜାନୁୟାରୀ ୪ ତାରିଖରେ ବନ୍ଦି ହେଲେ । ତାଙ୍କୁ ବାଙ୍କିପୁର ଜେଲ୍‌ରେ ରଖାଗଲା । ୧୯୩୪ରେ ବିହାରରେ ପ୍ରବଳ ଭୂମିକମ୍ପ ହେଲା । ରାଜେନ୍ଦ୍ର ପ୍ରସାଦ ଶ୍ୱାସରୋଗରେ ପୀଡ଼ିତ ହେବାରୁ ତାଙ୍କୁ ଜେଲ୍‌ରୁ ମୁକ୍ତ କରି ଦିଆଗଲା । ୧୯୪୨ ଭାରତ ଛାଡ଼ ଆନ୍ଦୋଳନର ନେତୃତ୍ୱ ନେଇ ରାଜେନ୍ଦ୍ର ପ୍ରସାଦ ପୁଣି ଜେଲ ଗଲେ । ଜେଲରେ ପୁନରାଏ ତାଙ୍କ ଦେହ ଖରାପ ହେଲା, ସେଥିପାଇଁ ୧୯୪୪ ମେ ମାସ ୫ ତାରିଖରେ ତାଙ୍କୁ ଜେଲରୁ ମୁକ୍ତି ଦିଆଗଲା । ଏହି ଜେଲ୍ ଜୀବନ ଭିତରେ ସେ ଜାତୀୟ ମୁକ୍ତି ଆନ୍ଦୋଳନର ଇତିହାସ ଲେଖିଥିଲେ ।

୧୯୪୬ ବ୍ରିଟିଶ ବଡ଼ଲାଟ ଏକ ପରାମର୍ଶଦାତା କମିଟି ଗଠନ କଲେ । ସେଥିରେ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍‌ର ପ୍ରତିନିଧି ରହିଲେ । ଏଥିରେ ତାଙ୍କୁ ବିଭିନ୍ନ ବିଭାଗର ଦାୟିତ୍ୱ ଦିଆଗଲା । ବିଶେଷକରି କୃଷି ଓ ଖାଦ୍ୟ ବିଭାଗ, ସହ ସମ୍ବିଧାନ ସଭାର ଅଧକ୍ଷ ଦାୟିତ୍ୱ ଦିଆଗଲା ।

୧୯୪୭ ମାର୍ଚ୍ଚ ୨୩ ତାରିଖରେ ଲର୍ଡ଼ ମାଉଣ୍ଟ ବ୍ୟାଟେନ ଭାରତର ବଡ଼ଲାଟ ହୋଇ ଆସିଲେ । ସେତେବେଳକୁ ଭାରତର ସ୍ୱାଧୀନତା ସଂଗ୍ରାମ ଖୁବ୍ ଜୋର୍‌ଦାର ଚାଲିଥାଏ । ହେଲେ ଇଂରେଜମାନେ ଭାରତ ଛାଡ଼ିବା ପୂର୍ବରୁ ଭାରତକୁ ଦୁଇଭାଗ କରିବାର ମଞ୍ଜି ପୋତିଦେଲେ । ମୁସ୍‌ଲିମ୍ ଲିଗ୍‌ର ନେତା ଜିନ୍ନା ପାକିସ୍ଥାନ ଗଠନର ଦାବି କରି ବସିଲେ । ଏହାର ସମାଧାନ ନ ହେଲେ ସ୍ୱାଧୀନତା ପାଇବା କଷ୍ଟକର ଅନୁଭବ କରି ୧୯୪୭ ଜୁନ୍ ମାସ ୧୪ ତାରିଖ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ସ୍ୱତନ୍ତ୍ର ପାକିସ୍ଥାନ ଗଠନ ପ୍ରସ୍ତାବକୁ କଂଗ୍ରେସ ସଂଖ୍ୟାଗରିଷ୍ଠ ଭୋଟରେ ଅନୁମୋଦନ କଲେ ।

ଭାରତୀୟ ସ୍ୱାଧୀନତା ଆଇନ ୧୯୪୭ ଜୁଲାଇ ମାସରେ ବ୍ରିଟିଶ ପାର୍ଲିଆମେଣ୍ଟରେ ଅନୁମୋଦିତ ହେଲା । ଅଖଣ୍ଡ ଭାରତ ବିଭାଜନ ପାଇଁ ଲର୍ଡ଼ ମାଉଣ୍ଟ ବ୍ୟାଟେନଙ୍କ ଅଧକ୍ଷତାରେ କମିଟି ଗଠନ ହେଲା ଓ ୧୯୪୭ ଅଗଷ୍ଟ ୧୪ରେ ପାକିସ୍ଥାନ ଓ ୧୫ ତାରିଖରେ ଭାରତ ବର୍ଷ ତାର ସ୍ୱାଧୀନତା ଘୋଷଣା କଲା । ଦିଲ୍ଲୀର ଲାଲକିଲ୍ଲାରେ ପ୍ରଧାନମନ୍ତ୍ରୀ ନେହେରୁ ଜାତୀୟ ପତାକା ଉତ୍ତୋଳନ କଲେ । ବିଖଣ୍ଡିତ ଭାରତର ସଂପତ୍ତି ଉଭୟ ଭାରତ ପାକିସ୍ଥାନକୁ ବଣ୍ଟନରେ ଡଃ ରାଜେନ୍ଦ୍ର ପ୍ରସାଦ ଜଣେ ପ୍ରବୀଣ ଓକିଲ ଭାବେ ଦାୟିତ୍ୱ ନେଇଥିଲେ ।

ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରିମଣ୍ଡଳରେ ରାଜେନ୍ଦ୍ର ପ୍ରସାଦ କୃଷି ଓ ଖାଦ୍ୟ ମନ୍ତ୍ରୀ ରୂପେ ନିଯୁକ୍ତି ପାଇଲେ । ମନ୍ତ୍ରୀର ଦାୟିତ୍ୱ ସହ ସମ୍ବିଧାନ ସଭାର ଅଧ୍ୟକ୍ଷ ପଦରେ ରହିଲେ । ସେହି ସମୟରେ ଦେଶର ନାମକରଣ ପାଇଁ ଅନେକ ଯୁକ୍ତି ଉପସ୍ଥାପିତ ହୋଇଥିଲା । ପରେ ରାଜେନ୍ଦ୍ର ପ୍ରସାଦଙ୍କ ହସ୍ତକ୍ଷେପ ଫଳରେ ଏହା ସମାଧାନ ହୋଇ ଭାରତ ପରେ ଇଣ୍ଡିଆ ରହିଲା ।

୧୯୪୯ ନଭେମ୍ବର ୨୦ ତାରିଖରେ ରାଜେନ୍ଦ୍ର ପ୍ରସାଦଙ୍କ ଅଧ୍ୟକ୍ଷତାରେ ଆମ ଦେଶର ଗଣତାନ୍ତ୍ରିକ ସମ୍ବିଧାନ ଗୃହିତ ହେଲା, ଏଥିରେ ୩୯୫ଟି ଅନୁଛେଦ ବା ଦଫା ଉଲ୍ଲେଖ ଅଛି ।

୧୯୫୦ ମସିହା ଜାନୁୟାରୀ ୨୬ରେ ଭାରତକୁ ଏକ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଧର୍ମନିରପେକ୍ଷ ରାଷ୍ଟ୍ର ଭାବରେ ପରିଣତ କରିବା ପାଇଁ ସମ୍ବିଧାନ ପ୍ରଣୟନ କରାଗଲା । ଏଥିରେ ରାଷ୍ଟ୍ରମୁଖ୍ୟ ପାଇଁ ରାଷ୍ଟ୍ରପତି ପଦ ରହିଲା । ସେ ସମୟରେ ଭାରତର ଜାତୀୟ କଂଗ୍ରେସର ତୃତୀୟ ଥର ପାଇଁ ରାଜେନ୍ଦ୍ର ପ୍ରସାଦ ସଭାପତି ରୂପେ ନିର୍ବାଚିତ ହୋଇଥାନ୍ତି । ଭାରତର ପ୍ରଥମ ରାଷ୍ଟ୍ରପତି ନିର୍ବାଚନ କିଏ ହେବ ଏଥିନେଇ ଅନେକ ଆଲୋଚନା ଓ ସମାଲୋଚନା ଆରମ୍ଭ ହୋଇଥିଲା । କାରଣ ପଣ୍ଡିତ ନେହେରୁ ଭାରତର ପ୍ରଥମ ରାଷ୍ଟ୍ରପତି ପଦ ପାଇଁ ରାଜେନ୍ଦ୍ର ପ୍ରସାଦଙ୍କ ପ୍ରାର୍ଥିତ୍ୱକୁ ପସନ୍ଦ କରୁ ନଥିଲେ । ସେ ଚାହୁଁଥିଲେ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଭାରତର ପ୍ରଥମ ରାଷ୍ଟ୍ରପତି ହୁଅନ୍ତୁ । ହେଲେ ରାଜେନ୍ଦ୍ର ପ୍ରସାଦଙ୍କ ବ୍ୟକ୍ତିତ୍ୱ ଏପରି ସୁଦୂର ପ୍ରସାରୀ ଥିଲା ଭାରତର ଅନେକ ରାଜନୈତିକ ନେତା ସ୍ୱାଧୀନତା ସଂଗ୍ରାମୀଙ୍କ ମନରାଜ୍ୟକୁ ସେ ଅକ୍ଲେଶରେ ଜୟ କରିପାରିଥିଲେ । ଭାରତ ବର୍ଷକୁ ସ୍ୱାଧୀନତା ଆଣିବାର ରାଜେନ୍ଦ୍ର ପ୍ରସାଦଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଏ ସବୁ ଆଖି ଆଗରେ ରଖି ଭାରତର ଜାତୀୟ କଂଗ୍ରେସ ରାଷ୍ଟ୍ରପତି ପଦ ପାଇଁ ରାଜେନ୍ଦ୍ର ପ୍ରସାଦଙ୍କୁ ମନୋନୀତ କଲେ । ହେଲେ ନେହେରୁ ଏହାର ପ୍ରତିବାଦ କରି ପଟେଲଙ୍କୁ ଅବଗତ କରାଇଲେ, ମୁଁ ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେବି । ହେଲେ ସର୍ଦ୍ଦାର ପଟେଲ ନେହେରୁ ଓ ରାଜେନ୍ଦ୍ର ପ୍ରସାଦଙ୍କ ମଧ୍ୟରେ ଥିବା ମନୋମାଳିନ୍ୟର ସମାଧାନ ଆଣି ନିବିଡ଼ ସଂପର୍କ ଡୋରୀରେ ବାନ୍ଧିଦେଲେ । ଯାହାଫଳରେ ରାଜେନ୍ଦ୍ର ପ୍ରସାଦ କଂଗ୍ରେସର ରାଷ୍ଟ୍ରପତି ପ୍ରାର୍ଥୀ ହେଲେ । ରାଷ୍ଟ୍ରପତି ନିର୍ବାଚନରେ ୩୪୮୬ଟି ଭୋଟ ମଧ୍ୟରୁ ୧୮୯୬ଟି ଭୋଟ ପାଇଁ ସେ ବିଜୟୀ ଘୋଷିତ ହେଲେ । ୧୯୫୨ ମେ ମାସ ୧୩ ତାରିଖରେ ଭାରତର ପ୍ରଥମ ରାଷ୍ଟ୍ରପତି ଭାବରେ ଡଃ ରାଜେନ୍ଦ୍ର ପ୍ରସାଦ ଶପଥ ନେଲେ । ୧୯୫୭ରେ ପୁଣି ସେ ଦ୍ୱିତୀୟ ଥର ପାଇଁ ରାଷ୍ଟ୍ରପତି ହେଲେ ।

ଅତି ନିରାଡ଼ମ୍ବର ଭାବରେ ଜୀବନଯାପନ କରି ରାଷ୍ଟ୍ରପତିଙ୍କ ଦରମାରୁ ଅର୍ଦ୍ଧେକ ଦେଶ ପାଇଁ ଦାନ କରୁଥିଲେ । ୧୯୬୨ ଭାରତ ବର୍ଷର ସର୍ବୋଚ୍ଚ ସମ୍ମାନ ଭାରତ ରତ୍ନ ଉପାଧିରେ ତାଙ୍କୁ ସମ୍ମାନିତ କରାଯାଇଥିଲା ।

ସେ ତାଙ୍କର ଆତ୍ମଜୀବନୀ ଆତ୍ମକଥା ଏବଂ ''ଗାନ୍ଧିଜୀଙ୍କ ପାଦତଳେ'', ଦୁଇଟି ବହି ଲେଖି ଯାଇଛନ୍ତି । ତାଙ୍କ ସଂପର୍କରେ ଥରେ ଗାନ୍ଧିଜୀ କହିଥିଲେ- ''ଆମ ଦେଶରେ ଗୋଟିଏ ଲୋକ ଅଛି ତାଙ୍କର ମରଣକୁ ସାମାନ୍ୟତମ ଭୟ ନାହିଁ। ସେ ହେଉଛି ରାଜେନ୍ଦ୍ର ।'' ସେପରି ନେହେରୁ କହିଥିଲେ- ''ରାଜେନ୍ଦ୍ର ପ୍ରସାଦ କେବେ ଜୀବନରେ ଭୁଲ୍ କରିଛନ୍ତି ଏକଥା କେହି କହିପାରିବେ ନାହିଁ । ସେ ଯାହା କହନ୍ତି, ତାହା କରନ୍ତି ଏବଂ ସେଥିରେ ଶେଷ ପର୍ଯ୍ୟନ୍ତ ଅଟଳ ରୁହନ୍ତି । ଏହା ତାଙ୍କ ବିଶେଷତ୍ୱ ।

ଡଃ ରାଜେନ୍ଦ୍ର ପ୍ରସାଦ ମୃତ୍ୟୁଞ୍ଜୟ ଓ ଧନଞ୍ଜୟ । ୧୯୪୭ରେ ସେ ପାଟନା ସାଂପ୍ରଦାୟିକ ଦଙ୍ଗାରେ ତାଙ୍କ ପୁତ୍ରବଧୂର ବିୟୋଗ ହେଲା । ୧୯୬୦ ସାଧାରଣତନ୍ତ୍ର ଦିବସର ପୂର୍ବଦିନ ରାତିରେ ତାଙ୍କ ବଡ଼ଭଉଣୀ ଭଗବତୀଙ୍କ ବିୟୋଗ ହେଲା । ଏହାପରେ ମଧ ତାଙ୍କର ସାମାନ୍ୟ ଧର୍ଯ୍ୟଚ୍ୟୁତି ହୋଇନି ।

ଭାରତ ହୋଇଛି ସନାତନ ଧର୍ମର ଜନ୍ମଭୂମି । ତେଣୁ ଆପଣା ଦେଶର ଏହି ମହାନ୍ ଧର୍ମୀୟ ଭାବଧାରା ଅନୁସାରେ ଆଶ୍ରମର ନାଁ ରଖିଲେ ସନାତନ ଆଶ୍ରମ ।

୧୯୬୨ଠାରୁ ତାଙ୍କର ପ୍ରିୟ ହାତଗଡ଼ା ଆଶ୍ରମରେ ରହି ପ୍ରତ୍ୟକ୍ଷ ଜନସେବାରେ ନିଜକୁ ନିୟୋଜିତ କଲେ ।

୧୯୬୩ ମସିହା ଫେବୃୟାରୀ ୨୮ ତାରିଖରେ ପାଟନା ଆକାଶରେ ସଞ୍ଜ ନଇଁ ଆସିଲା । ଆଉ ନଇଁ ଆସିଲା ଇତିହାସ ପୁରୁଷଙ୍କ ଜୀବନ ଆକାଶ ଆୟୁରେଖାର ସଂଜ । ସନାତନ ଆଶ୍ରମର ଶାନ୍ତସ୍ନିଗ୍ଧ ପରିବେଶ ମଧରେ ସବୁଦିନ ପାଇଁ ସେ ଆଖିବୁଜି ଦେଲେ ।

ରାଷ୍ଟ୍ରିୟ ମର୍ଯ୍ୟାଦା ସହକାରେ ଭାରତୀୟ ସେନାବାହିନୀ ଦ୍ୱାରା ତାଙ୍କ ମରଶରୀର ଚିତାରେ ପାଉଁଶ ହୋଇଗଲା । ସେ ପାଉଁଶ ମିଶିଗଲା ତାଙ୍କ ସ୍ୱପ୍ନର କର୍ମଭୂମି ଏ ସୁଜଳା ସୁଫଳା ସ୍ୱର୍ଣ୍ଣପ୍ରସୁ ଆର୍ଯ୍ୟଭୂମିର ପ୍ରତିଟି ଅଣୁ ପରମାଣୁରେ । ତାଙ୍କ ଚିତାର ଧୂଆଁ ଛାଇଗଲା ଭାରତର ସୁନୀଳ ଆକାଶରେ । ମୁକ୍ତି ସଂଗ୍ରାମୀ ସବୁଦିନିନ ପାଇଁ ଶୋଇଗଲେ ଶାନ୍ତିର ମହାନିଦ୍ରାରେ ।





# ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନ

## ( କାର୍ଯ୍ୟକାଳ - ୧୯୬୨ ମଇ ୧୩ରୁ ୧୯୬୭ ମଇ ୧୩)

କଥାବାର୍ତ୍ତା ହେଉ ହେଉ ଇଂରେଜ ସାହେବ ଜଣେ ଭାରତୀୟ ଦାର୍ଶନିକଙ୍କୁ କହିଲେ, ''ବୁଝିଲେ ଆଜ୍ଞା ଏ କଳା, ସାବନା ରଙ୍ଗଠାରୁ ଧଳା ରଙ୍ଗଟା ବୋଧହୁଏ ଭଗବାନଙ୍କର ବେଶୀ ପସନ୍ଦ । କେବଳ ସେଇଥିପାଇଁ ପୃଥିବୀର ଅନ୍ୟ ଜାତି ତୁଳନାରେ ଆମ ଇଂରେଜ ଜାତିଟା ଭଗବାନଙ୍କର ଅତି ପ୍ରିୟ ।

କେଉଁ ଲୋକଙ୍କୁ କେଉଁ ପ୍ରକାର ଉତ୍ତର ଦେବାକୁ ହେବ ସେ କଥା ଭାରତୀୟ ଦାର୍ଶନିକ ଜଣଙ୍କୁ ଠିକ୍ ଜଣାଥିଲା । ସେଇଥିପାଇଁ ସାହେବ ଜଣଙ୍କୁ ଉଚିତ ବୁଦ୍ଧି ଶିଖାଇ ଦେବାକୁ ଯାଇ କହିଲେ, ଆଜ୍ଞା ଆପଣଙ୍କ ଏ ଜାତିଟା କାହିଁକି ଗୋରା ହୋଇଛନ୍ତି ତାହା ଆପଣ ଜାଣିଛ କି ?

ଇଂରେଜ ସାହେବ ଜଣଙ୍କ ବୋକାଙ୍କ ପରି ମୁଣ୍ଡ ହଲାଇ ମନା କରିଦେଲେ । ଦାର୍ଶନିକ ଜଣଙ୍କ ହସିଦେଇ କହିଲେ, ''ଯଦି ନ ଜାଣିଛନ୍ତି ତେବେ ମୁଁ କହୁଛି ଆପଣ ମନଦେଇ ଶୁଣନ୍ତୁ ।''

ଥରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ମନହେଲା କାହିଁକି ରୋଷେଇ ଶାଳାରେ ବସି ରୁଟି ତିଆରି କରିବାକୁ । ହେଲେ ରୁଟି ତିଆରି କରିବାର ଧାରଣା ତାଙ୍କର ଆଗରୁ ନଥିଲା । ସେ ଯାହାହେଉ ଧାରଣା ଥାଉ ଅବା ନଥାଉ କିନ୍ତୁ ରୁଟି ତିଆରି ହେବ । ବ୍ରହ୍ମା ପ୍ରଥମ ରୁଟିକୁ ବେଲୁ ବେଲୁ ଲମ୍ବା କରିଦେଲେ । ସେ ଲମ୍ବା ରୁଟିକୁ ସେକୁ ସେକୁ ତାହା କଞ୍ଚା ହୋଇଗଲା । ଆଜ୍ଞା ଜାଣିଛନ୍ତି ନା ସେଇ କଞ୍ଚା ରୁଟିରୁ ପରା ଇଂରେଜମାନେ ଜନ୍ମ ନେଲେ ।

ରୁଟି ସେକିବାର ନିଶା ବ୍ରହ୍ମାଙ୍କୁ ଏମିତି ଘାରିଥାଏ ଯେ ସ୍ଥିର ହୋଇ ରହିପାରୁ ନଥିଲେ । ପୁଣି ଦ୍ୱିତୀୟ ରୁଟି ବେଲିବା କାମ ଆରମ୍ଭ କଲେ । ସେ ରୁଟିଟି ଛୋଟ ହୋଇଗଲା, ତାହା ନିଆଁରେ ସେକିବା ବେଳେ କଳା ପଡ଼ିଗଲା । ସେଇ କଳା ରୁଟିରୁ ଜନ୍ମ ନେଲେ ନିଗ୍ରୋମାନେ ।

ତଥାପି ବ୍ରହ୍ମାଙ୍କ ମନ ଶାନ୍ତି ହୋଇନଥିଲା । ସେ ତୃତୀୟଥର ସେକିବା ବେଳକୁ ରୁଟି ସେକିବାର ଧାରଣା ଆସି ଯାଇଥାଏ । ତୃତୀୟ ଥର ରୁଟିଟି ବେଶୀ ଲମ୍ବା ହେଲାନି କି ଛୋଟ ମଧ ହେଲାନି, ସେହିପରି ସେକିବା ବେଳେ କଞ୍ଚା ହେଲାନି କି କଳାମଧ ପଡ଼ିଲା ନାହିଁ । ସେଇ ରୁଟିରୁ ଜନ୍ମନେଲେ ଭାରତୀୟମାନେ । ଦାର୍ଶନିକ ଜଣଙ୍କ କଥା ସରିବା ବେଳକୁ ଇଂରେଜ ସାହେବ ଜଣଙ୍କ ବାଟ ଭାଙ୍ଗି ଚାଲିଗଲେ । ହେଲେ ସେ ଦାର୍ଶନିକ ଜଣଙ୍କ ଅନ୍ୟ କେହି ନୁହଁନ୍ତି, ସେ ହେଲେ ଆମ ଭାରତର ପ୍ରଥମ ଉପରାଷ୍ଟ୍ରପତି, ଦ୍ୱିତୀୟ ରାଷ୍ଟ୍ରପତି ମହାନ୍ ଦାର୍ଶନିକ ସର୍ବପଲ୍ଲୀ ରାଧାକ୍ରିଷ୍ଣନ ।

ମାନ୍ଦ୍ରାଜର (ଆଧୁନିକ ତାମିଲନାଡୁ) ସର୍ବପଲ୍ଲୀ ଗାଁରେ ବୀର ସ୍ୱାମୀଙ୍କୁ ଅବା ନ ଚିହ୍ନେ କିଏ ? ଦରିଦ୍ର ହେଲେ ବି ସେ ଥିଲେ ଜଣେ ପ୍ରତିଭାବାନ ବ୍ରାହ୍ମଣ ପୁରୋହିତ । ପୁରୋହିତ କର୍ମରୁ ଯାହା ରୋଜଗାର କରନ୍ତି ସେଥିରେ ତାଙ୍କ ପରିବାର ବେଶ୍ ଶାନ୍ତିରେ ଚଳିଯାଏ । ତାଙ୍କରି ପୁଅ ରୂପରେ ୧୮୮୮ ମସିହା ସେପ୍ଟେମ୍ବର ୫ ତାରିଖରେ ରାଧାକ୍ରିଷ୍ଣନ ଜନ୍ମଗ୍ରହଣ କରିଥିଲେ । ତିରୁଭାଣି ବ୍ରାହ୍ମଣ ପରିବାରରେ ସେ ଜନ୍ମ ନେଇଥିଲେ ମଧ ତାଙ୍କର ପ୍ରକୃତ ବାସସ୍ଥାନ ଥିଲା ସର୍ବପଲ୍ଲୀ ଗ୍ରାମରେ । ସେଥିପାଇଁ ତାଙ୍କ ନାମ ପୂର୍ବରୁ ସର୍ବପଲ୍ଲୀ ନାମ ସଂଯୋଗ କରାଯାଇଥିଲା ।

ବୀରସ୍ୱାମୀ ଥିଲେ ଦରିଦ୍ର ବ୍ରାହ୍ମଣ ଓ ପାଞ୍ଚଟି ପୁତ୍ର କନ୍ୟାର ଜନକ । ହେଲେ ରାଧାକ୍ରିଷ୍ଣନଙ୍କ ଶିକ୍ଷା ପାଇଁ ସେ ଚିନ୍ତିତ ହୋଇଗଲେ । ସେତେବେଳେ ଭାରତର ଖ୍ରୀଷ୍ଟଧର୍ମର ପ୍ରସାର ପାଇଁ ମିସନାରୀ ସ୍କୁଲ ପ୍ରତିଷ୍ଠା କରାଯାଉଥାଏ । ବୀରସ୍ୱାମୀ ଏଥର ସେହି ମିସ୍‌ନାରୀ ସ୍କୁଲରେ ରାଧାକ୍ରିଷ୍ଣନଙ୍କ ନାମ ଲେଖାଇଦେଲେ । ଏହିଠାରୁ ହିଁ ଆରମ୍ଭ ହୋଇଥିଲା ରାଧାକ୍ରିଷ୍ଣନଙ୍କ ବାଲ୍ୟଶିକ୍ଷା । ୧୮୯୬ରେ ପ୍ରାଥମିକ ଶିକ୍ଷା ଶେଷ କରି ସେ ତିରୁପତିର ତୁ ଲୁଥର୍ଣ୍ଣ ମିଶନ ହାଇସ୍କୁଲରେ ନାମ ଲେଖାଇଲେ । ପିଲାଟି ଦିନରୁ ପ୍ରଭୁ ଭେଙ୍କଟେଶ୍ୱରଙ୍କୁ ଭକ୍ତି କରୁଥିଲେ ।

୧୯୦୦ ମସିହାରେ ହାଇସ୍କୁଲ ପାଠ ଶେଷ କରିବା ପରେ ସେ ଭେଲୋରର ଭୁରହି କଲେଜ ଓ ୧୯୦୪ରେ ମାଡ୍ରାସର ଖ୍ରୀଷ୍ଟିଆନ କଲେଜରେ ଅଧୟନ କରି କୃତିତ୍ୱର ସହ ପାଶ୍ କଲେ । ରାଧାକ୍ରିଷ୍ଣନ ବି.ଏ. ଦର୍ଶନ ଶାସ୍ତ୍ରରେ ଅନର୍ସ ସହ ସମଗ୍ର

ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କଲେ । ଏ ସଫଳତାରେ ସେ ଯେତିକି ଖୁସି ହୋଇ ନଥିଲେ ତା'ଠାରୁ ବେଶୀ ଖୁସି ହୋଇଥିଲେ ସମସ୍ତ ଅଧ୍ୟାପକ ଓ ସହଯୋଗୀମାନେ । ଦର୍ଶନ ଶାସ୍ତ୍ରରେ ଉଚ୍ଚ ଶିକ୍ଷା ପାଇଁ ମାନ୍ଦ୍ରାଜ କଲେଜରେ ଏମ୍.ଏ. ନାମ ଲେଖାଇଲେ କଲେ । ଏବଂ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍.ଏ. ପାଶ୍ କଲେ ।

୧୯୦୯ରେ ସମସ୍ତ ଶିକ୍ଷାଧ୍ୟୟନ ଶେଷ କରି ମାଡ୍ରାସ ପ୍ରେସିଡେନ୍ସି କଲେଜରେ ଦର୍ଶନ ବିଭାଗର ଅଧ୍ୟାପକ ଭାବରେ କାର୍ଯ୍ୟ ଆରମ୍ଭ କଲେ । ୧୯୧୮ରେ ସେ ମହୀଶୂର ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ ଭାବରେ ଦାୟିତ୍ୱ ନେଇଥିଲେ ।

୧୯୩୧ରେ ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ଓ ୧୯୩୯ରେ ପଣ୍ଡିତ ମଦନ ମୋହନ ମାଳବ୍ୟଙ୍କ ଅନୁରୋଧରେ ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ଜଣେ ବିଶିଷ୍ଟ ଦାର୍ଶନିକ ତଥା ଶିକ୍ଷାବିତ ଭାବରେ ତାଙ୍କର ପ୍ରଚଣ୍ଡ ପ୍ରତିଭା ବିକଶିତ ହୋଇଥିଲା । ୧୯୨୬ ଜୁନ୍ ମାସରେ ସେ ଲଣ୍ଡନ, ସେପ୍ଟେମ୍ବରରେ ଆମେରିକା ପ୍ରଭୃତି ଦେଶକୁ ଏବଂ ଅକ୍ସଫୋର୍ଡ୍, କେମ୍ବ୍ରିଜ ହାଭାର୍ଡ୍, ପ୍ରିନସଟନ, ଚିକାଗୋ ଇତ୍ୟାଦି ବହୁ ବିଶ୍ୱବିଦ୍ୟାଳୟରେ ହିନ୍ଦୁ ଧର୍ମ ସଂପର୍କିତ ଭାଷଣ ଦେବାପାଇଁ ନିମନ୍ତ୍ରଣ ରକ୍ଷାକରି ଯାଇଥିଲେ । ଫଳରେ ବିଦେଶରେ ହିନ୍ଦୁଧର୍ମ ସଂପର୍କରେ ଲୋକଙ୍କ ମନରେ ଶ୍ରଦ୍ଧା ପାଇଥିଲେ ।

ତାଙ୍କ ଠାରେ ଦେବୀଙ୍କର ଆଶୀର୍ବାଦ ଥିଲା । ସେ ଥିଲେ ଖୁବ୍ ଶ୍ରୁତିବାନ । ଯେଉଁ କଥା ଥରେ ପଢୁଥିଲେ କ୍ୟାସେଟ୍ ପରି ମନରେ ସାଇତା ହୋଇ ରହୁଥିଲା । କଲିକତା ମହାବିଦ୍ୟାଳୟର କୁଳପତି ତଥା ଭାରତର ବିଶିଷ୍ଟ ଶିକ୍ଷାବିତ ସାର୍ ଆଶୁତୋଷ ମୁଖାର୍ଜୀ ରାଧାକ୍ରିଷ୍ଣନଙ୍କ ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କର ଅନେକ ଗୁଡ଼ିଏ ଲେଖାକୁ ଏକାଠି କରି ସୁନ୍ଦର ବହିଟିଏ ପ୍ରକାଶ କରାଇଥିଲେ ।

ଜୀବନର ଶେଷ ପର୍ଯ୍ୟନ୍ତ ରାଧାକ୍ରିଷ୍ଣନ ସମଗ୍ର ବିଶ୍ୱରେ ବିଭିନ୍ନ ଦେଶ ଭ୍ରମଣ କରି ହିନ୍ଦୁ ଧର୍ମର ମହାନତା ଭାରତୀୟ ସଂସ୍କୃତିର ଗାଥା ପ୍ରଚାର କରିବାରେ ମନ ଦେଇଥିଲେ । ପାଶ୍ଚାତ୍ୟ ଜଗତରେ ଦାର୍ଶନିକ ଓ ମନିଷୀମାନେ ଜାଣିନଥିଲେ ଭାରତୀୟ ସଂସ୍କୃତି କେତେ ମହାନ୍ । ଜୀବନ ସାରା ସେ ଯେଉଁ ପଦବୀରେ ଅଧିଷ୍ଠିତ ହୋଇଥିଲେ ବି ମଧ୍ୟ ସବୁବେଳେ ସେ ଦର୍ଶନକୁ ଆପଣାର କରି ରଖୁଥିଲେ । ତାଙ୍କ ମତରେ ଭାରତୀୟ ଦର୍ଶନ ହିଁ ପ୍ରକୃତ ଦର୍ଶନ । ତାଙ୍କ ଲେଖା ଗୁଡ଼ିକରୁ ଦି ରେନ୍ ଅଫ୍ ରିଲିଜିଆନ୍ ''ଇନ୍

କିଷ୍ଟେଫରାରୀ ଫିଲୋସଫି'' ଓ ଇଣ୍ଡିଆନ ଫିଲୋସଫି ସାରା ବିଶ୍ୱରେ ଚହଳ ପକାଇଥିଲା । ଆର୍ଯ୍ୟ ଋଷିମାନଙ୍କ ସହ କଣ୍ଠ ମିଳାଇ ସେ ମଧ ''ସର୍ବେ ଭବନ୍ତୁ ସୁଖୀନୋର ମହାମନ୍ତ୍ର ସପକ୍ଷରେ ଯୁକ୍ତି କରିଥିଲେ ।

୧୯୪୯ରୁ ୧୯୫୨ ପର୍ଯ୍ୟନ୍ତ ରାଧାକ୍ରିଷ୍ଣନ ଭାରତ ପକ୍ଷରୁ ରାଷ୍ଟ୍ରଦୂତ ଭାବରେ ଋଷିଆରେ ଅବସ୍ଥାପିତ ହୋଇଥିଲେ । ଋଷିଆରୁ ରାଷ୍ଟ୍ରଦୂତ ଭାବରେ ବିଦାୟ ନେଲା ବେଳେ ଋଷିଆର ସର୍ବୋଚ୍ଚ ଶାସନକର୍ତ୍ତା ଲୌହମାନବ ଷ୍ଟାଲିନ ଲୁହ ଛଳ ଛଳ ଆଖିରେ ବିଦାୟ ଦେଇ କହିଲେ- ଆପଣ ହିଁ ପ୍ରଥମ ବ୍ୟକ୍ତି ଯେ କି ମୋତେ ରାକ୍ଷସ ଭାବରେ ନ ଦେଖି ଜଣେ ମଣିଷ ପରି ଦେଖିଛନ୍ତି । ନିଜର ପଗଡ଼ିକୁ ତାଙ୍କ ମୁଣ୍ଡରେ ପିନ୍ଧାଇ ଦେଇ । ତାଙ୍କ ପଗଡ଼ିକୁ ନିଜ ମୁଣ୍ଡରେ ବାନ୍ଧିଥିଲେ ।

ଭାରତର ବୈଦେଶିକ ନୀତିର ଢାଞ୍ଚାକୁ ପଣ୍ଡିତ ଜବାହରଲାଲ ନେହେରୁ ପ୍ରସ୍ତୁତ କରିଥିଲେ । ମାତ୍ର ଏହାକୁ ଜୀବନ୍ୟାସ ଦେଇଥିଲେ ରାଧାକ୍ରିଷ୍ଣନ । ଆଜି ମଧ ଜଣାଯାଏ ରାଧାକ୍ରିଷ୍ଣନ ଋଷକୁ ରାଷ୍ଟ୍ରଦୂତ ହୋଇ ଯାଇନଥାଏ , ତେବେ କାଶ୍ମୀର ହୁଏତ ପାକିସ୍ଥାନର ଅଂଶ ହୋଇଥାନ୍ତା । ଭାରତ ଋଷ ମଧରେ ଗଢ଼ି ଉଠିଥିବା ନିବିଡ଼ ସଂପର୍କ ପାଇଁ ରାଧାକ୍ରିଷ୍ଣନ ହିଁ ଦାୟୀ ଅଟନ୍ତି ।

୧୯୫୨ରେ ରାଧାକ୍ରିଷ୍ଣନ ହେଲେ ସ୍ୱାଧୀନ ଭାରତର ପ୍ରଥମ ଉପରାଷ୍ଟ୍ରପତି । ଉପରାଷ୍ଟ୍ରପତି ଥିବା ବେଳେ ସେ ରାଜ୍ୟସଭାର ଅଧକ୍ଷ ଭାବରେ ଅନେକ ସମସ୍ୟାର ସମାଧାନ ଆଣି ସଦସ୍ୟମାନଙ୍କର ପ୍ରିୟଭାଜନ ହୋଇପାରିଥିଲେ । ଏହାପରେ ଅଧକ୍ଷ ହିସାବରେ ବହୁ ଗଠନମୂଳକ ନିରପେକ୍ଷ ମତାମତ ଦେଇ ସମସ୍ତିଙ୍କୁ ସନ୍ତୁଷ୍ଟ କରିଥାନ୍ତି । ଗୃହର ସମ୍ମାନ ରକ୍ଷା କରିବା ପାଇଁ ସେ ସର୍ବଦା ଚେଷ୍ଟିତ ଥାନ୍ତି । ଦଶବର୍ଷ ଧରି ସେ ଭାରତର ରାଷ୍ଟ୍ରପତି ପଦରେ ରହି ଫଳତାର ସହ ଅଧକ୍ଷ କାର୍ଯ୍ୟ ତୁଲାଇଛନ୍ତି ।

ଭାରତର ପ୍ରଥମ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦଙ୍କ ଅବସର ପରେ ୧୯୬୨ ମେ ମାସ ୧୨ ତାରିଖରେ ଭାରତର ଦ୍ୱିତୀୟ ରାଷ୍ଟ୍ରପତି ଭାବରେ ଡଃ ରାଧାକ୍ରିଷ୍ଣନ ଦାୟିତ୍ୱ ଗ୍ରହଣ କଲେ । ଏହି ସମୟ ଭିତରେ ପୃଥିବୀର ବିଭିନ୍ନ ଦେଶ ପରିଭ୍ରମଣ କରି ଭାରତର ଧର୍ମ, ସଂସ୍କୃତି, ପରମ୍ପରା, ଭାରତର ବିଭିନ୍ନ ନୀତି, ବିଭିନ୍ନ ଦେଶ ବିଦେଶରେ ଗଭୀର ଭାବରେ ଆଲୋଚନା କରି ଭାରତର ସମ୍ମାନ ବୃଦ୍ଧି କରାଇଥିଲେ ।

୧୯୬୩ ଜୁନରେ ଆମେରିକା ଗସ୍ତ ସମୟରେ ଆମେରିକାର ରାଷ୍ଟ୍ରପତି ଜନ୍ କେନେଡ଼ି, ରାଧାକ୍ରିଷ୍ଣନଙ୍କୁ ଯଥେଷ୍ଟ ସମ୍ମାନ ଦେଇଥିଲେ ଏପରିକି ରାଷ୍ଟ୍ରପତି ଭବନର

ହ୍ୱାଇଟ ହାଉସ୍‌ର ପରିସରେ ରାଧାକ୍ରିଷ୍ଣନଙ୍କ ବିମାନ ଓହ୍ଲାଇବାର ବ୍ୟବସ୍ଥା କରିଥିଲେ । ତାଙ୍କ ରହିବା ପାଇଁ ବେୟର ହାଉସ୍‌ରେ ବ୍ୟବସ୍ଥା କରିଥିଲେ । ଏପରି ସମ୍ମାନ ଏଯାଏ କୌଣସି ରାଷ୍ଟ୍ରନାୟକଙ୍କୁ ଆମେରିକା ପ୍ରଦାନ କରିନଥିଲା । ପ୍ରଦାନ କରାଯାଇନି । ସେଠାରେ ପେନ୍ ସିଲଭାନିଆ ବିଶ୍ୱବିଦ୍ୟାଳୟ ଓ ପରେ ଡେନ୍‌ବର ବିଶ୍ୱବିଦ୍ୟାଳୟରୁ ତାଙ୍କୁ 'ଡକ୍ଟରେଟ୍ ଅଫ୍ ଲ' ଉପାଧି ପ୍ରଦାନ କରାଯାଇଥିଲା ।

ଏହାପରେ ଇଂଲଣ୍ଡ ଯାଇଥିଲେ ଓ ସେଠାରେ ତାଙ୍କୁ ରାଜକୀୟ ସମ୍ମାନ ମିଳିଥିଲା । ରାଣୀ ଏଲିଜାବେଥ୍ ତାଙ୍କୁ ନିଜେ ବକିଂହାମ୍ ରାଜପ୍ରାସାଦରୁ ପାଛୋଟି ନେଇଥିଲେ । ସେଠାରେ ତାଙ୍କ ଦେଶର ସର୍ବୋଚ୍ଚ ସମ୍ମାନ 'ଅର୍ଡ଼ର ଅଫ୍ ମେରିଟ୍' ପ୍ରଦାନ କରିଥିଲେ ।

ଡଃ ରାଧାକ୍ରିଷ୍ଣନ ୧୯୬୪ ସେପ୍ଟେମ୍ବର ୧୧ରେ ସୋଭିଏତ୍ ଋଷ ଯାଇଥିଲେ । ସେଠାରେ ତାଙ୍କ ପାଇଁ ସ୍ୱତନ୍ତ୍ର ଟ୍ରେନର ବ୍ୟବସ୍ଥା ହୋଇଥିଲା । ଏହାପରେ ସେ ଆୟାରଲ୍ୟାଣ୍ଡ ଯାଇଥିଲେ । ୧୯୬୪ ଡିସେମ୍ବରରେ ରୋମ ତଥା ବିଶ୍ୱର କ୍ୟାଥଲିକ୍ ଖ୍ରୀଷ୍ଟିଆନ ଜଗତର ଧର୍ମଗୁରୁ ପୋପ୍ ଷଷ୍ଠପଲ୍ ଭାରତ ଆସିଥିଲେ । ସେ ରାଧାକ୍ରିଷ୍ଣନଙ୍କୁ ଗରିବର ସାଥି ଓ ନିପୀଡ଼ିତ ଜନଗଣର ଏକାନ୍ତ ଶୁଭାନୁଧାୟୀ ବୋଲି ସଂମ୍ବୋଧନ କରି ବିଶ୍ୱବିଖ୍ୟାତ ଭାଟିକାନସିଟିର ସର୍ବୋଚ ସମ୍ମାନରେ ଭୂଷିତ କରିଥିଲେ । ଏବଂ ଭାଟିକାନ ପଦକ ପ୍ରଦାନ କରିଥିଲେ ।

ଏହି ସର୍ବୋଚ୍ଚ ଉପାଧିର ନାମ ''ହିରଣ୍ମୟ ଦେବଦୂତ ସୈନ୍ୟଦଳର ଦଳପତି'' । ତାଙ୍କୁ ମଧ ଜଗତର ଶ୍ରେଷ୍ଠ ସମ୍ମାନ ଟେମ୍ପଲଟନ ପୁରସ୍କାର ଦିଆଯାଇଥିଲା । ରାଧାକ୍ରିଷ୍ଣନ ଜୀବନର ଅର୍ଦ୍ଧାଧିକ ସମୟ ଅଧ୍ୟାପକ ବା କୁଳପତି ପଦରେ ଅଧିଷ୍ଠିତ ହୋଇଛନ୍ତି । ତାଙ୍କୁ ପୃଥିବୀର ବିଭିନ୍ନ ବିଶ୍ୱବିଦ୍ୟାଳୟରୁ ସମ୍ମାନ ସୂଚକ ଡକ୍ଟର ଉପାଧି ମିଳିଛି । ହେଲେ ମଙ୍ଗୋଲିଆ ସରକାର ତାଙ୍କୁ 'ଜ୍ଞାନଗୁରୁ' ଉପାଧି ପ୍ରଦାନ କରିଥିଲେ ।

ଏତେଗୁଡ଼ିଏ ସମ୍ମାନର ଅଧିକାରୀ ଭାରତର ରାଷ୍ଟ୍ରମୁଖ୍ୟ ହୋଇବି ତାଙ୍କୁ ସାମାନ୍ୟ ଗର୍ବ ସ୍ପର୍ଶ କରିନଥିଲା । ପ୍ରତିଦିନ ସକାଳ ୫ଟାରୁ ଉଠି ୬ଟାରେ ନିତ୍ୟକର୍ମ ସାରି ୯ଟା ବେଳକୁ ସାମାନ୍ୟ ବାଗିଜି ଲେମ୍ବୁ ବା କମଳା ରସ ପିଉଥିଲେ । ଏ ସମୟ ମଧ୍ୟରେ ବିଭିନ୍ନ ଭାଷାର ଖବର କାଗଜମାନ ପଢୁଥିଲେ । ଦ୍ୱିପ୍ରହର ଭାତ ଖାଉଥିଲେ । କାଠ ତକ୍ତପୋଷ ଉପରେ ଧଳା ଚାଦର ତକିଆ ପକାଇ ବସିବାକୁ ଭଲ ପାଉଥିଲେ । ପୁସ୍ତକ ଥିଲା ତାଙ୍କର ଜୀବନ ।

ରାଧାକ୍ରିଷ୍ଣନ ସକ୍ରିୟ ରାଜନୀତିରେ ଅଂଶଗ୍ରହଣ କରିନଥିଲେ । ଭାରତର

ତତ୍କାଳୀନ ପ୍ରଧାନମନ୍ତ୍ରୀ ନେହେରୁ ୧୯୪୯ରେ ରାଧାକ୍ରିଷ୍ଣନଙ୍କୁ ରାଷ୍ଟ୍ରଦୂତ ଭାବରେ ଋଷ ପଠାଇଲେ । ସେତେବେଳେ ଜାତୀୟ କଂଗ୍ରେସର ବହୁ ନେତା ଆପତ୍ତି ଉଠାଇ କହିଥିଲେ ରାଧାକ୍ରିଷ୍ଣନ ରାଜନୈତିକ ନେତା ନୁହଁନ୍ତି । ହେଲେ ନେହେରୁ ଏଥିପ୍ରତି କର୍ଣ୍ଣପାତ କରିନଥିଲେ ।

ରାଧାକ୍ରିଷ୍ଣନ ଜଣେ ପ୍ରସିଦ୍ଧ ଦାର୍ଶନିକ, ତାହା ନୁହେଁ ସେ ମଧ୍ୟ ପ୍ରସିଦ୍ଧ ଧର୍ମଯାଜକ । ତାଙ୍କ ହୃଦୟ ଉଦାର ଭାବରେ ପରିପୂର୍ଣ୍ଣ ଥିଲା । କୌଣସି ଧର୍ମକୁ ଘୃଣା ଚକ୍ଷୁରେ ଦେଖୁନଥିଲେ । ସବୁ ଧର୍ମକୁ ସମ୍ମାନ ଦେଉଥିଲେ । ସେଥିପାଇଁ ହିନ୍ଦୁର ଦେବମନ୍ଦିର, ମୁସଲମାନମାନଙ୍କର ମସ୍‌ଜିଦ୍, ଖ୍ରୀଷ୍ଟିଆନମାନଙ୍କ ଚର୍ଚ୍ଚରେ ସେ ଧର୍ମ ଆଲୋଚନା କରୁଥିଲେ । ସେ ଗୋଟିଏ ସଂଘ ଗଢ଼ିଥିଲେ, ତାହାର ନାମ ଥିଲା ''ଭାରତୀୟ ଦର୍ଶନ କଂଗ୍ରେସ ।''

ରାଧାକ୍ରିଷ୍ଣନଙ୍କ ପ୍ରଚଣ୍ଡ ପ୍ରତିଭା ନିକଟରେ ନେହେରୁ, ସର୍ଦ୍ଦାର ପଟେଲ ପ୍ରମୁଖ ବହୁ ବ୍ୟକ୍ତି ମୁଣ୍ଡ ନୁଆଉଁଥିଲେ । ଥରୁଟିଏ ରାଧାକ୍ରିଷ୍ଣନଙ୍କ ଜନ୍ମଦିନକୁ ଏକ ବିଶିଷ୍ଟ ଦିବସ ରୂପେ ପାଳନ କରିବାକୁ ଇଚ୍ଛା କରି ତାଙ୍କ ଅନୁମତି ଲୋଡ଼ିଲେ । ହେଲେ ରାଧାକ୍ରିଷ୍ଣନ ସେଥିରେ ରାଜି ନହୋଇ କହିଥିଲେ ମୋ ଜନ୍ମ ଦିବସକୁ ଭାରତର ସମଗ୍ର ଶିକ୍ଷକମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଛି । ମୋ ଜନ୍ମ ଦିବସକୁ ଗୁରୁଦିବସ ରୂପେ ପାଳନ କରିବ । ଗୁରୁମାନଙ୍କର କଲ୍ୟାଣ ପାଇଁ ଗୁରୁ ପାଣ୍ଠି ମଧ୍ୟ ସୃଷ୍ଟି କରିବେ ।

୧୯୭୫ ମସିହା ଅପ୍ରେଲ ୧୭ ତାରିଖ ରାତି ୧୨ଟା ୪୫ ମିନିଟ୍ । ୮୬ ବର୍ଷ ବୟସରେ ମହାନ୍ ଦେଶପ୍ରେମୀ, ଦାର୍ଶନିକ ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନ ଆମ ସମସ୍ତଙ୍କୁ ଛାଡ଼ି ଚାଲିଗଲେ । ମାନବ ପ୍ରେମୀ ମଣିଷଟି ସବୁଦିନ ପାଇଁ ଶୋଇଗଲା ଭାରତ ଜନନୀ କୋଳରେ ।

ମାନ୍ଦ୍ରାଜର ମଇଲାପୁର ଶ୍ମଶାନରେ ତାଙ୍କର ଅନ୍ତିମ କ୍ରିୟା ସମାପନ କରାଗଲା ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ତାଙ୍କ ମରଶରୀରକୁ ଜୁଇ ଉପରେ ଶୁଆଇ ଦିଆଗଲା, ଯେଉଁ ଆଧ୍ୟାତ୍ମିକତାର ପୁରୋଧା ସାଜି ଈଶ୍ୱରଙ୍କର ଅମୃତସ୍ୟ ପୁତ୍ର ହେବାକୁ ସେ ସାଜିଥିଲେ କର୍ମବୀର । ସେ ଅମୃତଧାମକୁ ଈଶ୍ୱର ପାଖକୁ ସେ ଫେରିଗଲେ । ସାରା ବିଶ୍ୱ ସ୍ତବ୍ଧ ଚକିତ ହୋଇଗଲା । ରାଧାକ୍ରିଷ୍ଣନଙ୍କୁ ବକ୍ଷରେ ଧରି ମଇଲାପୁର ସେଇ ଦିନରୁ ପାଲଟିଗଲା ଏକ ଜାତୀୟ ତୀର୍ଥ ଭୂମିରେ । ଅଗଣିତ ନରନାରୀଙ୍କ ଆଖିରୁ ଅଶ୍ରୁର ବନ୍ୟା ଛୁଟିଲା । ଏ ଅଶ୍ରୁ ଖାଲି ଦୁଃଖର ନୁହେଁ, ରାଜର୍ଷି ରାଧାକ୍ରିଷ୍ଣନଙ୍କ ପ୍ରତି ଶ୍ରେଷ୍ଠ ସମ୍ମାନ ଓ ଶ୍ରେଷ୍ଠ ସ୍ମାରକୀ ।





# ଡଃ ଜାକିର ହୁସେନ

## ( କାର୍ଯ୍ୟକାଳ -୧୯୬୭ ମଇ ୧୩ରୁ ୧୯୬୯ ମଇ ୩)

ସେଦିନ ସ୍କୁଲରେ ବାର୍ଷିକ ଉତ୍ସବ ପାଇଁ ଆୟୋଜନ ଚାଲିଥାଏ । ସବୁ ପିଲାମାନେ ମେଳି ହୋଇ ଆନନ୍ଦରେ ଖେଳ କୌତୁକରେ ଲାଗି ଯାଇଥାନ୍ତି । ସେମାନଙ୍କ ମନ ଆଜି ଖୁସି । ଯା'ହେଉ ଆଜି ସ୍କୁଲର ବାର୍ଷିକ ଉତ୍ସବ, ହଷ୍ଟେଲ ଖାଇବାଟା ବେଶ୍ ମଜା ହେବ । ମାଛ ନଚେତ୍ ମାଂସ ଟିକେ ନିଶ୍ଚେ ହବ । ରାତିକୁ ହଷ୍ଟେଲ ପିଲାଙ୍କ ଦ୍ୱାରା ଡ୍ରାମା ବାଃ ଦିନଟା ବେଶ୍ ମଜାରେ କଟିଯିବ ।

ହେଲେ ଏପଟେ ହଷ୍ଟେଲ ଦାୟିତ୍ୱରେ ଥିବା ଶିକ୍ଷକ ଜଣଙ୍କର ମନ ବେଶ୍ ଆନନ୍ଦ । ଆଜି ପିଲାଙ୍କୁ କ'ଣ ଗୋଟିଏ କରି ଖାଇବାକୁ ଦେଇଦେଲେ ଗଲା । ଯେଝା କାମରେ ଯେଝା ଲାଗିଛନ୍ତି । କିଏ ଦେଖୁଛନ୍ତି ଯେ ଏତିକି କରିଦେଲେ ମାସକର ଖର୍ଚ୍ଚ ଉଠିଯିବ ।

ଏଇଆ ଭାବି ଶିକ୍ଷକ ଜଣଙ୍କ ଭାତ ସହ ଡାଲମା ଆଉ ଭଜା କରିବା ପାଇଁ ରୋଷେଇଆକୁ ବରାଦ ଦେଲେ । ହେଲେ ରୋଷେଇଆ ଯେଉଁ ପରିମାଣର ଚିଠା ଦେଲେ ଶିକ୍ଷକ ଜଣଙ୍କ ଚିଠା ଅନୁଯାୟୀ ସବୁଥିରୁ କାମ କମ୍ କରି ପରିବାପତ୍ର ଯୋଗାଇଦେଲେ । ହେଲେ ରୋଷେଇଆ ପ୍ରତିବାଦ କରିବାରୁ ଶିକ୍ଷକ ଜଣଙ୍କ ବିରକ୍ତି ପ୍ରକାଶ କରି କହିଲେ, ଦେଖ ତୁମ କାମ ହେଲା ରୋଷେଇ କରିବା, ତୁମେ ରୋଷେଇ କରିବ । ଏତେ ଝମେଲାରେ ମୁଣ୍ଡ ପୂରାଇବାକୁ ତୁମକୁ କିଏ କହିଲା, ଚାକିରି କଣ ପିତା ଲାଗୁଛି କି ?

ବିଚରା ରୋଷେଇଆ ଜଣଙ୍କ କରିବ କ'ଣ, ଚୁପ୍‌ଚାପ୍ ଶିକ୍ଷକ ଜଣଙ୍କ ଯାହାଦେଲେ ସେଇଥିରେ ରୋଷେଇ କରି ଆରାମରେ ବସିଲେ ।

ଖାଇବା ସମୟ ହୋଇଗଲା । ପିଲାମାନେ ଯିଏ ଯେଉଁଠି ଥିଲେ ଆସି ନନାଙ୍କ ପାଖରେ ହାଜର । ରୋଷେଇଆ ନନା ପିଲାଙ୍କୁ ବସାଇ ଭାତ, ଡାଲମା ପରସି ଦେଲେ । ଭାତ ଦେହରେ ଡାଲମା ନୁହେଁ ତ କେବଳ ପାଣି ।

ପିଲାଏ ପ୍ରତିବାଦ କରି ଉଠିଲେ । ନନା ଇଏ କ'ଣ ? ଭାତ ଦେହରେ ପାଣି ଢାଳି ଦେଇନ କଣ ?

ବିଚରା ନନା କରିବେ କ'ଣ, ପିଲାଙ୍କୁ ଦେଖି ତାଙ୍କର ଭାରି ଦୟା ହେଲା ସେ କେବଳ ନୀରବ ରହିଲେ । ସବୁ ପିଲାମାନେ ରାଗରେ ଉଠି ଚାଲିଗଲେ । ହେଲେ ଗୋଟିଏ ପତଳା ପିଲା କାହାକୁ କିଛି ନ କହି ନୀରବରେ ଖାଇ ଚାଲିଥାଏ । ଏକଥା ଦେଖି ନନା ଆଶ୍ଚର୍ଯ୍ୟ ହୋଇଗଲେ । ପିଲାଟି କହିଲା, ରାଗିକରି ଉଠିଗଲେ ଏଠି ମୋର କିଏ ଅଛି ଖାଇବାକୁ ଦେବ । ତେଣୁ ଯାହା ଯେତେବେଳେ ମିଳୁଛି ତାକୁ ଚଳାଇନେବା ଉଚିତ୍ । ରାଗ ଅଭିମାନରୁ ମିଳିବ କ'ଣ  କହିଲେ ?

ସେଦିନର ସେଇ ପିଲାଟି ଅନ୍ୟ କେହି ନୁହେଁ ଭାରତର ଦ୍ୱିତୀୟ ଉପରାଷ୍ଟ୍ରପତି ଓ ତୃତୀୟ ରାଷ୍ଟ୍ରପତି ଡଃ ଜାକିର ହୁସେନ ।

୧୮୯୭ ମସିହା ଫେବୃୟାରୀ ଆଠ ତାରିଖ । ହାଇଦ୍ରାବାଦର ଜଣେ ଜଣା ଶୁଣା ଆଇନଜ୍ଞ ଫିଦା ହୁସେନ ଖାଁଙ୍କ ତୃତୀୟ ସନ୍ତାନ ରୂପେ ଜନ୍ମ ଗ୍ରହଣ କଲେ ଜାକିର ହୁସେନ । ଜାକିରଙ୍କର ପୂର୍ବ ପୁରୁଷମାନେ ଉତ୍ତରପ୍ରଦେଶର କାୟାମଙ୍ଗଞ୍ଜଠାରେ ଦେଢ଼ ମାଇଲ ଦୂରରେ ଅବସ୍ଥିତ ତିତୋର ଗ୍ରାମରେ ରହୁଥିଲେ ।

ଜାକିରଙ୍କ ପିତା ଫିଦା ହୁସେନ ମାତ୍ର ୨୯ ବର୍ଷ ବୟସରେ ଇହଲୀଳା ସମ୍ବରଣ କଲେ । ସେତେବେଳକୁ ଜାକିର ମାତ୍ର ୯ ବର୍ଷର ବାଳକ । ଫିଦା ହୁସେନ ଫିରୋସାରେ କୋଠାଘର ତିଆରି କରିଥିଲେ । ସେ କୋଠାଘରକୁ ଭାରତ ସ୍ୱାଧୀନ ହେବାପରେ ଜାକିର ହୁସେନ ଉତ୍ତର ପ୍ରଦେଶ ସରକାରଙ୍କୁ ଦାନ କରି ଦେଇଥିଲେ । ବାପାଙ୍କ ମୃତ୍ୟୁ ପରେ ମା ସନ୍ତାନମାନଙ୍କୁ ନେଇ ହାଇଦ୍ରାବାଦରେ ଛାଡି ଚାଲି ଆସିଲେ ନିଜ ଗାଁ ତିତୋରକୁ । ସେଠାରେ ସେ ପଞ୍ଚମ ଶ୍ରେଣୀରେ ନାମ ଲେଖାଇଲେ । ଏତିକିବେଳେ ପ୍ରବଳ ପ୍ଲେଗ ରୋଗ ବ୍ୟାପିଲା, ହେଲେ ମା' ଏ ଖବର ଜାକିର ପାଖକୁ ପଠାଇ ନଥିଲେ । ଶେଷରେ ସେଇ ପ୍ଲେଗ ରୋଗରେ ତାଙ୍କ ମାଆ ମରିଗଲେ, ତାଙ୍କୁ ସେତେବେଳକୁ  ୧୬ ବର୍ଷ । ତାଙ୍କ ବାପ୍ପା ଓ ମାଆଙ୍କୁ ହରାଇ ଚାରିଆଡ଼ ଅନ୍ଧାର ଦିଶିଲା । ଏକଥା ପ୍ରଧାନଶିକ୍ଷକ ଆଲତାପା ହୋସେନ ଜାଣିପାରିଲେ ଏବଂ ତାଙ୍କରି ସାହାଯ୍ୟରେ ଜାକିର ସ୍କୁଲ ଶିକ୍ଷା ଶେଷ କଲେ ।

ସୁଫି ହାସାନା ସ୍କୁଲରୁ ମାଟ୍ରିକ ପାଶ୍ କରିବା ପରେ ଜାକିର ଆଲିଗଡ଼ ବିଶ୍ୱବିଦ୍ୟାଳୟରେ ନାମ ଲେଖାଉଲେ । ୧୯୨୩ ମସିହାରେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନରେ ସାମିଲ ହୋଇ କଲେଜ ପଢ଼ା ଛାଡ଼ିଲେ । ଜାତୀୟ ଆନ୍ଦୋଳନ ଶିଥିଳ ହେବାପରେ ଜାକିର ପୁଣି ଆଲିଗଡ଼ କଲେଜକୁ ଫେରିଥିଲେ ଏବଂ କୃତିତ୍ୱର ସହ ବି.ଏ. ପାଶ୍ କଲେ । ପରେ ଆଲିଗଡ଼ସ୍ଥ ଆଙ୍ଗେ ଓରିଏଣ୍ଟାଲ କଲେଜରେ ଏମ୍.ଏ. କରିବା ପରେ ବିଦେଶରେ ଡିଗ୍ରୀ ପାଇଁ ଇଚ୍ଛା ପ୍ରକାଶ କଲେ ।

ହେଲେ ଇଂରେଜ ଶାସନରେ ଜଣେ ଭାରତୀୟ ଯୁବକଙ୍କୁ ଏ ପ୍ରକାର ସୁବିଧା ଦେବାକୁ ଇଂରେଜ ସାହେବମାନେ ଇଚ୍ଛା ପ୍ରକାଶ କଲେନି । ଅବଶ୍ୟ ବହୁ ଚେଷ୍ଟା ପରେ ଜାକିରଙ୍କ ଇଚ୍ଛା ପୂରଣ ହେଲା । ସେ ଜର୍ମାନ ଗଲେ । ଅର୍ଥନୀତିରେ ଡକ୍ଟରେଟ କରି ଜାକିର ଜର୍ମାନୀରୁ ଭାରତ ପ୍ରତ୍ୟାବର୍ତ୍ତନ କଲେ । ଉଚ୍ଚପଦସ୍ଥ ସରକାରୀ ପଦ ପଦବୀକୁ ପ୍ରତ୍ୟାଖ୍ୟାନ କରି ଭାରତର ଶିକ୍ଷା ପଦ୍ଧତିକୁ ନୂତନ ଶୈଳିରେ ପରିଚାଳିତ କରିବାକୁ ଅଣ୍ଟା ଭିଡ଼ିଲେ ଓ ଜାମିଆ, ମିଲିଆ (ଓସ୍‌ମାନିଆ) କଲେଜକୁ ଜାତୀୟ ସଂସ୍ଥାରେ ପରିଣତ କରିବାକୁ ଲାଗି ପଡ଼ିଲେ । ତାଙ୍କ ଶିକ୍ଷାର ମୂଳ ଉଦ୍ଦେଶ୍ୟ ଥିଲା ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତି ମଧ୍ୟରେ ସମନ୍ୱୟ ରକ୍ଷା ଭାରତୀୟ ସଂସ୍କୃତି ଓ ପରମ୍ପରା ଅନୁସାରେ ସବୁଠାରୁ ବେଶୀ ଗୁରୁତ୍ୱ ଦିଆଯାଉଥିଲା । ଏଥିରେ ଅଧିକ ଗୁରୁତ୍ୱ ଦିଆଯାଉଥିଲା ଦେଶାତ୍ମବୋଧ ଜାଗ୍ରତ ଉପରେ । ଏ କଲେଜରେ ଜାକିର ଅଧ୍ୟାପକ କିରାଣୀ, କୋଷାଧକ୍ଷ, ଆକାଉଣ୍ଟାଣ୍ଟ ସମସ୍ତ କାମ ତୁଲାଉଥିଲେ । ସେ କାହାରି ନିନ୍ଦା ସହ୍ୟକରିପାରୁ ନଥିଲେ । ସେ ସଦା ସର୍ବଦା ପିଲାଙ୍କୁ କହୁଥିଲେ; କଥାରେ ନୁହେଁ କାମରେ କରି ଦେଖାଇବା ହିଁ ବାହାଦୁରୀ । ଥରେ ଜଣେ ଛାତ୍ର ମଇଳା ଟୋପି ପିନ୍ଧି ବିଦ୍ୟାଳୟକୁ ଆସିଥିଲେ । ଜାକିର ସାଥେ ସାଥେ ପିଲାଟିକୁ ନେଇ ଘରେ ଟୋପିକୁ ସାବୁନ ଦେଇ ସଫା କରି ପିଲାଟିକୁ ଘରକୁ ପଠାଇଦେଲେ । ଏହା ପରଠାରୁ କେହି ସ୍କୁଲକୁ ଆଉ ମଇଳା ପୋଷାକ କିମ୍ୱା ଟୋପି ପିନ୍ଧି ଆସିନଥିଲେ । ସେ ତାଙ୍କର ଧୈର୍ଯ୍ୟ, ନିଷ୍ଠା ଓ ଏକାଗ୍ରତାକୁ ପୁଞ୍ଜି କରି 'ଜାମିଆ ମିଲିଆ' ଅନୁଷ୍ଠାନକୁ ଏପରି ଭାବରେ ଗଢ଼ିଲେ ୧୯୪୮ ମସିହା ବେଳକୁ ସେ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଥିଲା ।

ଡଃ ହୁସେନ, ଗାନ୍ଧିଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ଗାନ୍ଧିଜୀଙ୍କ ମୌଳିକ ଶିକ୍ଷାନୀତିକୁ ପ୍ରବର୍ତ୍ତନ କରିବା ପାଇଁ ସର୍ବଦା ବ୍ୟସ୍ତ ଥିଲେ । ସେଥିପାଇଁ ମୌଳିକ ଶିକ୍ଷାନୀତିର ପୂର୍ଣ୍ଣାଙ୍ଗ ଯୋଜନା ମାନ ପ୍ରଣୟନ କଲେ । ୧୯୩୮ ଠାରୁ ୧୯୫୦ ପର୍ଯ୍ୟନ୍ତ ସେବାଗ୍ରାମର ହିନ୍ଦୁସ୍ତାନୀ ତାଲିମ ସଂଘର ସଭାପତି ଭାବରେ ନିର୍ବାଚିତ ହୋଇଥିଲେ ।

୧ ୯୪୦ ମସିହା କଥା । ଦିଲ୍ଲୀରେ ସାଂପ୍ରଦାୟିକ ଦଙ୍ଗା ଖୁବ୍ ଜୋର୍‌ରେ ଚାଲିଥାଏ । ସେତିକିବେଳେ ହୁସେନ ଦିଲ୍ଲୀ ଯାଇଥାନ୍ତି । ଦିନେ ଦିଲ୍ଲୀ ରାସ୍ତାରେ ଚାଲିଥାନ୍ତି, ହଠାତ୍ ପାଞ୍ଚ ଛଅ ଜଣ ସମାଜବିରୋଧୀ ଲୋକ ଆସି ହୁସେନଙ୍କୁ ଆକ୍ରମଣ କଲେ । କ'ଣ କରିବେ ହୁସେନ କିଛି ଚିନ୍ତା କରିପାରିଲେ ନାହିଁ । ଏତିକିବେଳେ ତାଙ୍କର ଜଣେ ପରିଚିତ ବ୍ୟକ୍ତି ସେଠାରେ ପହଞ୍ଚି ତାଙ୍କ ବିପଦରୁ ଉଦ୍ଧାର କରି ବସାକୁ ପଠାଇଦେଲେ ।

୧ ୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା । ଭାରତର ଶିକ୍ଷାମନ୍ତ୍ରୀ ହେଲେ ମୌଲାନା ଆବୁଲ କାଲାମ ଆଜାଦ । ତାଙ୍କ ଅନୁରୋଧରେ ହୁସେନ ୧ ୯୪୮ ମସିହାରେ ଆଲିଗଡ଼ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ନିଯୁକ୍ତି ପାଇଲେ । ସେହି ସମୟର ଏକ ଘଟଣା, ଆଲିଗଡ଼ ବିଶ୍ୱବିଦ୍ୟାଳୟର ଏକ ଛାତ୍ର କ୍ରମାଗତ ଭାବରେ ୩ ବର୍ଷ ଧରି ଫେଲ୍ ହେଲା । କୁଳପତିଙ୍କର କ୍ଷମତା ଅଛି ସେ ଚାହିଁଲେ ଛାତ୍ର ଜଣକ ପାଶ୍ କରିପାରିବେ । ଛାତ୍ର ଜଣକ ହୁସେନଙ୍କୁ ଅନୁରୋଧ କରି କହିଲେ, ହୁସେନ କରିବେ କ'ଣ ? ସେ କହିଲେ ଦେଖ, ଅଫିସରୁ ଫର୍ମଟିଏ ଆଣ । ତୁମେ ଯେବେ ଚାହୁଁଚ ମୁଁ ଅନ୍ୟାୟ କରେ ବାଧ ହୋଇ ଅନ୍ୟାୟ କରିବି । ପିଲାଟି କ'ଣ ଭାବିଲା କେଜାଣି ଚୁପ୍ ହୋଇ ଘରକୁ ଫେରିଗଲା । ଆସନ୍ତା ପରୀକ୍ଷା ଯାଇଁ ନିଜକୁ ପ୍ରସ୍ତୁତ କଲା, ଏବଂ ପାଶ୍ ମଧ୍ୟ ହେଲା ।

୧ ୯୪୦ରେ ଡଃ ହୁସେନ ବିହାରରେ ରାଜ୍ୟପାଳ ଭାବରେ ନିଯୁକ୍ତି ପାଇଲେ । ୧ ୯୫୨ରେ ସେ ରାଜ୍ୟସଭା ପାଇଁ ନିର୍ବାଚିତ ହେଲେ । ଡକ୍ଟର ହୁସେନ ବମ୍ବେର ରାଜାପାଳ ଥିବାବେଳେ ଜଷ୍ଟିସ ହରିହର ମହାପାତ୍ର ଥାନ୍ତି ପାଟନାର ବିଚାରପତି । ହରିହର ମହାପାତ୍ର ଅନେକ ସମୟରେ ରାଜଭବନକୁ ନିମନ୍ତ୍ରିତ ହୋଇ ଆସୁଥିଲେ । ହୁସେନ ସଦା ସର୍ବଦା କହୁଥିଲେ କେବଳ ବିଚାର ବିଭାଗର ଉଚିତ୍ ନ୍ୟାୟ ଦାନ ଜରିଆରେ ସମାଜରେ ଘଟୁଥିବା ଭ୍ରଷ୍ଟାଚାରକୁ ରୋକାଯାଇପାରିବ । ପାଞ୍ଚ ବର୍ଷ କାଳ ହୁସେନ ବିହାରର ରାଜ୍ୟପାଳ ହେବାପରେ ୧ ୯୬୨ ମେ ୧୫ ତାରିଖରେ ହୁସେନ ହେଲେ ଭାରତର ଉପରାଷ୍ଟ୍ରପତି ।

ତାଙ୍କ ସମୟରେ ହିଁ ଚୀନ୍ ଭାରତ ଉପରେ ଆକ୍ରମଣ କଲା । ସେହି ସମୟରେ ଡକ୍ଟର ହୁସେନ ବିଦେଶ ଯାଇ ଭାରତର ନିତୀ ଆଦର୍ଶ ବିଷୟରେ ସେ ବିଭିନ୍ନ ରାଷ୍ଟ୍ରମାନଙ୍କୁ ବୁଝାଉଥିଲେ । ୧ ୯୬୩ରେ ଭାରତର ସର୍ବଶ୍ରେଷ୍ଠ ପୁରସ୍କାର ଭାରତ ରତ୍ନରେ ତାଙ୍କୁ ଭୂଷିତ କରାଯାଇଥିଲା । ଡଃ ହୁସେନ ଯେ କି ସାହିତ୍ୟିକମାନଙ୍କୁ ସମ୍ମାନ ଦେଉଥିଲେ । ସେ

କହୁଥିଲେ, "ଦେଶ ଗଠନରେ ଲେଖକମାନଙ୍କ ଭୂମିକା ରହିଛି । ସେମାନେ ଚାହିଁଲେ ଦେଶର ଐକ୍ୟ ପ୍ରତିଷ୍ଠା ହୋଇପାରିବ । ଡକ୍ଟର ରାଧାକ୍ରିଷ୍ଣନ ରାଷ୍ଟ୍ରପତି ପଦରୁ ଅବସର ନେବାପରେ ଡକ୍ଟର ହୁସେନ ୧୯୬୭ ମସିହା ମେ ମାସ ୯ ତାରିଖରେ ଭାରତର ରାଷ୍ଟ୍ରପତି ହେଲେ ଓ ସେହି ବର୍ଷ ୧୩ ତାରିଖରେ ସେ ରାଷ୍ଟ୍ରପତି ଭାବରେ ଶପଥ ନେଇ ଶପଥ ପାଠ କଲାବେଳେ ସେ କହିଥିଲେ-

ସାରା ଜୀବନ ମୁଁ ସଂପ୍ରଦାୟକ ମନୋଭାବ ବିରୁଦ୍ଧରେ ସଂଗ୍ରାମ ଚଳାଇବି । ଦେଶର ଐକ୍ୟ ସଂହତି ଓ ପ୍ରଗତି ପ୍ରତି ଦୃଷ୍ଟି ଦେବି । ଦରିଦ୍ର ଜନତାର ସେବାରେ ମୁଁ ଆତ୍ମୋତ୍ସର୍ଗ କରିବି । ରାଷ୍ଟ୍ରପତି ପଦରେ ଥାଇ ସେ ଭାରତର ସବୁ ରାଜ୍ୟକୁ ସମାନ ଦୃଷ୍ଟିରେ ଦେଖୁଥିଲେ । ଜାତି, ଧର୍ମ, ବର୍ଣ୍ଣ କିମ୍ବା ଭାଷାଗତ ବାଛ ବିଚାର ତାଙ୍କର ନଥିଲା । ସେ କୌଣସି କାର୍ଯ୍ୟ କଲାବେଳେ ସେ ଦେଶର ସ୍ୱାର୍ଥକୁ ସବୁଠାରୁ ଉପରେ ରଖୁଥିଲେ । ରାଜନୈତିକ ଜୀବନକୁ ବାଦ ଦେଲେ ଡଃ ହୁସେନ ସାରା ଜୀବନ ଶିକ୍ଷକ ଓ ଶିକ୍ଷାବିତ୍ ଭାବରେ ଜୀବନ କଟାଉଥିଲେ । ସେ ସଦା ସର୍ବଦା କହୁଥିଲେ, ବିଚାର, ଚିନ୍ତା, ଜ୍ଞାନ ଓ କର୍ମ ମଧ୍ୟରେ ସମନ୍ୱୟ ରକ୍ଷା ହିଁ ପ୍ରକୃତ ଶିକ୍ଷା । ଛାତ୍ରକୁ ଭଲ ମଣିଷ କରି ଗଢ଼ିବା ଶିକ୍ଷାର ଲକ୍ଷ୍ୟ ହେବା ଦରକାର ।

ଡକ୍ଟର ହୁସେନଙ୍କର ସାହିତ୍ୟ ପ୍ରତି ରହିଛି ଅନୁରକ୍ତ । ସେ ଏଲିମେଣ୍ଟାରୀ ଇକୋନମି (ଏଡ୍‌ଉଇନ ବେନଙ୍କ ଦ୍ୱାରା ଲିଖିତ) ପ୍ଲେଟୋଙ୍କ ରିପବ୍ଲିକ୍ ଓ ... ଜର୍ମାନ ପୁସ୍ତକ ନ୍ୟାସନାଲ ଇକୋନମିକୁ ଭଲ ଭାବରେ ଅନୁବାଦ କରିଥିଲେ । ପ୍ଲେଟୋଙ୍କ ଲିଖିତ ଷ୍ଟେଟ୍ ପୁସ୍ତକର ହିନ୍ଦୀ ଅନୁବାଦ କରି ପ୍ରଶଂସା ପାଇଥିଲେ । ଶିଶୁ ସାହିତ୍ୟ ସୃଷ୍ଟି କରିବାର ସେ ଥିଲେ ସିଦ୍ଧହସ୍ତ । ତାଙ୍କର ୧୫ ଗୋଟି ଆସାମୀ ପୁସ୍ତକ ମଧ୍ୟରୁ ଆବୁ ଖାଁଙ୍କ କବରୀ (ଆବୁ ଖାଁର ଛେଳି) ପ୍ରଧାନ । ଅର୍ଥଶାସ୍ତ୍ର ଉପରେ ଲିଖିତ ତାଙ୍କର କେତୋଟି ପୁସ୍ତକ ସ୍କୁଲ କଲେଜର ପାଠ୍ୟ ପୁସ୍ତକ ରୂପରେ ପ୍ରଚଳିତ ଅଛି । ସେଦିନ ୧୯୬୯ ମସିହା ମେ ମାସ ୩ ତାରିଖ । ହୁସେନଜୀ ହଠାତ୍ ଅସୁସ୍ଥ ହୋଇ ପଡିଲେ ଏବଂ ସେହିଦିନ ଅପରାହ୍ନ ୧୯.୧୫ ମିନିଟ୍‌ରେ ସେ ଦେହତ୍ୟାଗ କଲେ । ଡଃ ହୁସେନ ଥିଲେ ଜଣେ ନିଷ୍ଠାପର ଦେଶପ୍ରେମୀ । ସେ ସର୍ବୋଚ୍ଚ ପଦରେ ଅଧିଷ୍ଠିତ ହୋଇ ପଦର ମର୍ଯ୍ୟାଦା ବୃଦ୍ଧି କରିଥିଲେ । ସେ ଥିଲେ ଏକାଧାରରେ ଜଣେ ଶିକ୍ଷକ, ଶିକ୍ଷାବିତ୍, ଲେଖକ, ଅର୍ଥନୀତିଜ୍ଞ, ପ୍ରଶାସକ ତଥା ଦେଶ ସେବକ ।





# ଭି.ଭି. ଗିରି

## (କାର୍ଯ୍ୟକାଳ - ୧୯୬୯ ମଇ ୩ରୁ ୧୯୬୯ ଜୁଲାଇ ୨୦ ୧୯୬୯ ଅଗଷ୍ଟ ୨୪ରୁ ୧୯୭୪ ଅଗଷ୍ଟ ୨୪)

ସେତେବେଳେ ଆୟରଲ୍ୟାଣ୍ଡରେ ସ୍ୱାଧୀନତା ସଂଗ୍ରାମ ଖୁବ୍ ଜୋର୍‌ଦାର ଚାଲିଥାଏ । ସେଠିକାର ଇଷ୍ଟର ବିପ୍ଳବ ଓ ତାର ପରିଣତିକୁ ଓଡ଼ିଶାର ଜଣେ ଯୁବକ ନିଜ ଆଖିରେ ଦେଖିଲେ । ବନ୍ଦର ଖଣି ଓ ପରିବହନ ସଂସ୍ଥାର ଶ୍ରମିକମାନେ କିଭଳି ଯୋଗଦେଇ ସ୍ୱାଧୀନତା ସଂଗ୍ରାମକୁ ଆଗେଇ ନେଉଥିଲେ ତାହା ମଧ୍ୟ ସେ ଅନୁଭବ କରିଥିଲେ । ସେଠାକାର ବିପ୍ଳବୀମାନେ "ଆନାର୍କିକାଲ ସୋସାଇଟି" ନାମରେ ଏକ ସୋସାଇଟି ଗଠନ କରିଥିଲେ । ସେଥିରେ ଯୁବକ ଜଣକ ଏକ ସଭ୍ୟ ରହି ଆନ୍ଦୋଳନ ଜାରି ରଖିଥିଲେ । ସେହି ସମୟ ମଧ୍ୟରେ ଯୁବକ ଜଣକ ସେଠାକାର ଜାତୀୟ ନେତାମାନଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନ କରିଥିଲେ । ଏ ସବୁ ଖବର ପାଇବା ପରେ ଇଂରେଜମାନେ ତାଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖୁଥାନ୍ତି । ଓଡ଼ିଶାର ଏକ ଯୁବକ ଏଠାରେ ଆନ୍ଦୋଳନର ନେତୃତ୍ୱ ନେବ । ନାଁ ଏହା ସଂଭବ ନୁହେଁ ନାହିଁ । ସେହି ସମୟରେ ଇଂରେଜ ସାମରିକ ଆଇନ ପ୍ରଶାସକ ସାର୍ ଜନ୍ ମ୍ୟାକ୍ସୁଏଲ ଓଡ଼ିଶାର ଏହି ଯୁବକ ଜଣଙ୍କ ବିରୁଦ୍ଧରେ ପରୱାନା ଜାରି କଲେ । ଏହାଦ୍ୱାରା ଯୁବକ ଜଣଙ୍କ ରହୁଥିବା ସ୍ଥାନରେ ଘଣ୍ଟାକୁ ଘଣ୍ଟା ଖାନତଲାସ କରାଗଲା । ଓଡ଼ିଆ ଯୁବକ ଜଣଙ୍କ ଏଥିରେ ବ୍ୟତିବ୍ୟସ୍ତ ହୋଇଗଲେ । ହେଲେ ଇଂରେଜମାନେ ତାଙ୍କ ପାଖରୁ କୌଣସି ଆପତ୍ତିଜନକ ପ୍ରମାଣ ପାଇନଥିଲେ ।

ଓଡ଼ିଆ ଯୁବକ ଜଣଙ୍କ କାର୍ଯ୍ୟକଳାପରେ ଇଂଲଣ୍ଡରେ ବ୍ରିଟିଶ ସରକାର ବ୍ୟତିବ୍ୟସ୍ତ

ହୋଇଗଲେ । ପାର୍ଲାମେଣ୍ଟରେ ଆଲୋଚନା କରାଗଲା । ତାଙ୍କୁ ନଜର ବନ୍ଦୀ ଭାବରେ ରଖାଗଲା । ତଥାପି କୌଣସି ପ୍ରମାଣ ନାହିଁ ।

ବାଧ୍ୟ ହୋଇ ଯୁବକ ଜଣଙ୍କ ନାଁରେ ଥିବା ପରଓ୍ୱାନାକୁ ବ୍ରିଟିଶ ସରକାର ଉଠାଇନେଲେ । ସେଦିନର ସେଇ ଓଡ଼ିଆ ଯୁବକ ଜଣଙ୍କ ଅନ୍ୟ କେହି ନୁହେଁ, ସେ ହେଲେ ଭାରତର ଚତୁର୍ଥ ରାଷ୍ଟ୍ରପତି । ଓଡ଼ିଶା ମାଟିର ସୁଯୋଗ୍ୟ ସନ୍ତାନ ଶ୍ରୀଯୁକ୍ତ ବରାହଗିରି ଭେଙ୍କଟ ଗିରି ।

ଶ୍ରୀ ବରାହ ଗିରି ଓଡ଼ିଶାର ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସହରରେ ୧୮୯୪ ମସିହା ଅଗଷ୍ଟ ମାସ ୧୦ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ୧୨ଟି ସନ୍ତାନ ମଧ୍ୟରୁ ସାତୋଟିଙ୍କର ଅକାଳ ବିୟୋଗ ହୋଇଥାଏ । ତଥାପି ତାଙ୍କ ମା' ଅସୀମ ଧୈର୍ଯ୍ୟର ସହ ସବୁ ଦୁଃଖ କଷ୍ଟକୁ ସାମ୍ନା କରୁଥିଲେ । ତାଙ୍କ ପିତା ଯୋଗିଆ ପାନ୍ତୁଲୁ ଥିଲେ ବ୍ରହ୍ମପୁର, କାହିଁକି ଓଡ଼ିଶାର ଜଣେ ନାମଜାଦା ଓକିଲ । ଭି.ଭି. ଗିରିଙ୍କ ପୂର୍ବପୁରୁଷମାନେ ଆନ୍ଧ୍ରପ୍ରଦେଶର ଗୋଦାବରୀ ଜିଲ୍ଲାରୁ ଓଡ଼ିଶାର ଗଞ୍ଜାମକୁ ଉଠି ଆସିଥିଲେ । ଗିରିଙ୍କର ଜେଜେବାପା ଥିଲେ ଜାତିରେ ବ୍ରାହ୍ମଣ । ତଥାପି ବାଣିଜ୍ୟ ବ୍ୟବସାୟ କରି ଜୀବିକା ନିର୍ବାହ କରୁଥିଲେ । ତାଙ୍କ ସାନଭାଇ ନରସିଂହ ପାନ୍ତୁଲୁ ତାଙ୍କୁ ସେ କାମରେ ସାହାଯ୍ୟ କରୁଥିଲେ । ନରସିଂହଙ୍କର ପିଲାଛୁଆ ନ ବଞ୍ଚିବାରୁ ଭି.ଭି. ଯୋଗିଆକୁ ପୁଅ କରି ନେଇଥିଲେ । ଯୋଗିଆ ତାଙ୍କ ପରିବାରରେ ପ୍ରଥମ ସନ୍ତାନ ।

ଗିରିଙ୍କ ମାମୁଁ ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀ । ବାପା ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରୁଥାନ୍ତି । ଏଥିପାଇଁ ଭାରତର ତୁଙ୍ଗ ରାଜନୈତିକ ନେତାମାନେ ଅନେକ ସମୟରେ ତାଙ୍କ ଘରକୁ ଆସନ୍ତି । ସେଇମାନଙ୍କ ସାହାଯ୍ୟରେ ଗିରି ପିଲାଟି ଦିନରୁ ପ୍ରଭାବିତ ହେଲେ । ପିଲାଟି ଦିନରୁ ଗିରି ଥିଲେ ଭାରି ଅଧ୍ୟବସାୟୀ । ସେଥିପାଇଁ ଖେଳାଖେଳି କରିବା ଅପେକ୍ଷା ପାଠ ପଢାରେ ଆନନ୍ଦ ଲାଭ କରୁଥିଲେ । ସେ ବ୍ରହ୍ମପୁର ଠାରେ ୟଙ୍ଗ ମ୍ୟାନ୍ସ ଲାଇବ୍ରେରୀ ନାମରେ ଏକ ପାଠାଗାର ନିର୍ମାଣ କରିଥିଲେ । ବ୍ରହ୍ମପୁର ସହରରେ ପ୍ରାଥମିକ ଶିକ୍ଷା ଠାରୁ ହାଇସ୍କୁଲ ଶିକ୍ଷା ସମାପ୍ତ କରିଥିଲେ । କଲେଜ ଶିକ୍ଷା ପରେ ସେ ଖଲିକୋଟ କଲେଜରେ ନାମ ଲେଖାଇଲେ । କଲେଜରେ ପ୍ରବେଶ କଲାବେଳକୁ ଦେଶରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଥାଏ । ତେଣୁ ବିଭିନ୍ନ ଜାତୀୟ ନେତାଙ୍କ ସଂପର୍କରେ ଅଧିକରୁ ଅଧିକ ଜାଣିବା ସହ ସେମାନଙ୍କ ସହ ମିଶିବାକୁ ସୁଯୋଗ ପାଇଲେ । ଗୋପାଳକୃଷ୍ଣ ଗୋଖଲେଙ୍କ ଆଦର୍ଶ ଯୁବକ ଗିରିଙ୍କୁ ବେଶ୍ ପ୍ରଭାବିତ

କରିପାରିଥିଲା । ଗୋଖଲଙ୍କ ଠାରେ ଥିବା ଶ୍ରଦ୍ଧା, ସଂଯମ ଓ ସମର୍ପଣ ଭଳି ମହନୀୟ ଗୁଣ ଗିରିଙ୍କୁ ବେଶ୍ ଆକୃଷ୍ଟ କରିଥିଲା ।

ଖଲିକୋଟ କଲେଜରୁ କୃତିତ୍ୱର ସହ ବି.ଏ. ପାଶ୍ କରିବା ପରେ ଉଚ୍ଚଶିକ୍ଷା ପାଇଁ ସେ ସୁଦୂର ଆୟରଲ୍ୟାଣ୍ଡକୁ ଯାଇଥିଲେ । ବେର୍ଲିନ୍ ସହରରେ ଥିବା ଆୟରଲ୍ୟାଣ୍ଡ ବିଶ୍ୱ ବିଦ୍ୟାଳୟରେ ବାରିଷ୍ଟର ପାଠ ପଢ଼ିଲେ । ଆୟରଲ୍ୟାଣ୍ଡରେ ଥିବାବେଳେ ଗିରି କାର୍ଲମାର୍କ୍ସଙ୍କ କମ୍ୟୁନିଷ୍ଟବାଦ ତତ୍ତ୍ୱ ସଂପର୍କରେ ପଢୁଥିଲେ । ମହାନ୍ ନେତା ଡିଭାଲେରାଙ୍କ ସହ ବ୍ୟକ୍ତିଗତ ସଂପର୍କ ସ୍ଥାପନ କଲେ । ତାଙ୍କରି ଶ୍ରମ ନୀତି ଦ୍ୱାରା ଗିରି ବିଶେଷ ପ୍ରଭାବିତ ହେଲେ । ଇଂରେଜମାନଙ୍କ କଳା ଗୋରା ଭେଦା ଭେଦର ମୂଳୋତ୍ପାଟନ୍ ପାଇଁ ଉଦ୍ୟମ କଲେ । ଏଥିପାଇଁ ହିଂସାର ପଥ ଅବଲମ୍ବନ କଲେ ଏ ସମସ୍ୟା ସମାଧାନ ହୋଇପାରିବ ବୋଲି କହିଥିଲେ । ହେଲେ ଯୁବକ ଗିରିଙ୍କୁ ଗାନ୍ଧିଜୀ ଅନେକ ବୁଝାସୁଝା କଲେ, ହେଲେ ଫଳ କିଛି ହେଲାନି । ଗାନ୍ଧିଙ୍କ ନୀତିକୁ ଗିରି ଘୋର ବିରୋଧ କରୁଥିଲେ । କାରଣ ସେ ଗାନ୍ଧିଜୀଙ୍କ ଆଦର୍ଶର ଘୋର ପରିପନ୍ଥୀ ଥିଲେ । ଆୟରଲ୍ୟାଣ୍ଡରେ ରହୁଥିବା ବେଳେ ସେ ଅନାର୍କିକାଲ ସୋସାଇଟି ଗଠନ କରି ଇଂଲଣ୍ଡରେ ଚର୍ଚ୍ଚିତ ବ୍ୟକ୍ତିରେ ରୂପାନ୍ତରିତ ହୋଇଥିଲେ । ସେତିକିବେଳେ ତାଙ୍କୁ ଏମ୍.ଏ. ପଢ଼ିବା ପାଇଁ : ଅମେରିକା ଯିବାକୁ ଅନୁମତି ମିଳିଲା ନାହିଁ । ମନ ଦୁଃଖରେ ସିଂହଳ ଦେଇ ଭାରତକୁ ଫେରୁଥାନ୍ତି । କଲମ୍ବୋରେ ତାଙ୍କ ସହ ଏକ ସିଂହଳୀ ଦମ୍ପତି ଦେଖା ହେଲେ । ସିଂହଳୀ ବାବୁ ଜାଣିପାରିଲେ ଗିରି ଇଂଲଣ୍ଡରୁ ଉଚ୍ଚଶିକ୍ଷା କରି ନିଜ ଦେଶକୁ ଫେରୁଛନ୍ତି । ତେଣୁ ସିଂହଳୀ ବାବୁ ଜଣଙ୍କ ଅତି ଖୁସିରେ କହିଲେ, ଭାଇ ! ହୋମ୍‌ରେ ସବୁ କିଛି ଭଲ ତ ?

ଗିରି ଆଶ୍ଚର୍ଯ୍ୟ ହୋଇ ଲୋକଟିକୁ ପଚାରିଲେ, 'ହୋମ୍' କ'ଣ ? ତାଙ୍କୁ ଆଶ୍ଚର୍ଯ୍ୟ ହେବା ଦେଖି ସିଂହଳୀ ବାବୁ ଜଣକ କହିଲେ ମୁଁ ଇଂଲଣ୍ଡକୁ ହୋମ ବା ଘର ବୋଲି କହିଥାଏ । ତାହା ଆମ ଘରଠାରୁ ସୁଖକର ନୁହେଁ କି ? ଗିରି ପୂରା ରାଗି ଉଠି କହିଲେ, ଇଂଲଣ୍ଡ କ'ଣ ଆପଣଙ୍କର ମାତୃଭୂମି । ସିଂହଳରେ ଜନ୍ମ ନେଇ ଇଂଲଣ୍ଡକୁ ମାତୃଭୂମି କହିବାକୁ ଲାଜ ଲାଗୁନି । ଏଇଠି ଅନ୍ୟ ଏକ ସମସ୍ୟା ତାଙ୍କୁ ବିବ୍ରତ କରିଦେଲା, ଯେହେତୁ ସେ ବ୍ରାହ୍ମଣ । ବିଦେଶ ଯାଇ ତାଙ୍କର ଜାତି ନଷ୍ଟ ହୋଇଚି । ତାଙ୍କୁ ଜାତିରେ ମିଶିବାକୁ ହେଲେ ପଞ୍ଚଗବ୍ୟ ଖାଇବାକୁ ହେବ । ମାତ୍ର ଗିରି ଥିଲେ ଦୃଢ଼ମନା, ଅନ୍ୟାୟ ଆଗରେ ଭାଙ୍ଗି ପଡ଼ିବେ ବରଂ ମୁଣ୍ଡ ନୁଆଇଁବେ ନାହିଁ । ସେ ଦୃଢ଼ତାର ସହ କହିଲେ, ବିଦେଶ ଗଲେ ଜାତି କିପରି ଯାଏ । ମୁଁ ମା'ଙ୍କ କଥା ମାନି ଆଇଁଷ ଟିକେ ମୁହଁରେ ଦେଇନି ।

ଅଥଚ ମୋ ଜାତି କିପରି ଗଲା ଶେଷରେ ସମାଜର କୁସଂସ୍କାର ବିରୁଦ୍ଧରେ ସ୍ୱର ଟେକି ସମାଜ ଠାରୁ ବାଛନ୍ଦ ହେଲେ, ମାତ୍ର ପଞ୍ଚଗବ୍ୟ ଖାଇଲେ ନାହିଁ ।

ବିଦେଶରୁ ଫେରିବା ପରେ ମାନ୍ଦ୍ରାଜ ହାଇକୋର୍ଟର ମୁଖ୍ୟ ବିଚାରପତି ମିଷ୍ଟର ଆଲିଙ୍ଗ ଓ ବିଚାରପତି ଶେଷଗିରି ଆୟାର ଥିଲେ । ସେ ଗିରିଙ୍କୁ ବ୍ୟକ୍ତିଗତ ଭାବରେ ଜାଣିଥିଲେ । ସେଥିପାଇଁ ତାଙ୍କୁ ମୁନ୍‌ସଫି ଚାକରିଟିଏ ଦେଲେ । ହେଲେ ଦୃଢ଼ମନା ଗିରି ଏହାକୁ ପ୍ରତ୍ୟାଖ୍ୟାନ କରି ବ୍ରହ୍ମପୁରରେ ଓକିଲାତି କଲେ । ଦେଶ ମାତୃକାର ସେବା ପାଇଁ ଯାହାର ଜନ୍ମ ସେ ବା କାହିଁକି ଆଉନି ବ୍ୟବସାୟକୁ ଆଦରି ନେବେ । ବିଦେଶୀମାନଙ୍କ ହାତରୁ ଭାରତକୁ ମୁକ୍ତ କରିବା ପାଇଁ ତାଙ୍କ ମନ ବ୍ୟାକୁଳ ହୋଇ ଉଠିଲା । ଶେଷରେ ଗିରି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ଆୟରଲ୍ୟାଣ୍ଡରୁ ପ୍ରତ୍ୟାବର୍ତ୍ତନ ପରେ ଗିରି ସକ୍ରିୟ ରାଜନୀତିରେ ଅଂଶଗ୍ରହଣ କଲେ । ଜାତୀୟ କଂଗ୍ରେସର ସଭ୍ୟ ହୋଇ ଇଂରେଜ ସରକାରଙ୍କ ଅବକାରୀ ନୀତି ବିରୁଦ୍ଧରେ ଆନ୍ଦୋଳନ ଜାରି ରଖିଲେ ଏଥିପାଇଁ ଇଂରେଜ ସରକାର ତାଙ୍କୁ ଆରେଷ୍ଟ କରି ଜେଲକୁ ପଠାଇଦେଲେ । ଜେଲ୍‌ରେ ବହୁତ ଶାରୀରିକ ଦଣ୍ଡ ଭୋଗ କରିଥିଲେ ମଧ୍ୟ ସେ ଭାଙ୍ଗିପଡ଼ି ନଥିଲେ । ବରଂ ଜେଲ୍ ଭିତରେ ଆନ୍ଦୋଳନ କରି ଗୋରା ସିପାହୀମାନଙ୍କୁ ବ୍ୟତିବ୍ୟସ୍ତ କରି ଦେଇଥିଲେ ।

୧୯୨୭ରେ ବେଙ୍ଗଲ ନାଗପୁର ରେଳ ବିଭାଗରେ କାମ କରୁଥିବା ଶ୍ରମିକମାନଙ୍କୁ ନେଇ ଏକ ସଂଗଠନ ଗଠନ କଲେ । ସେହି ସମୟରେ ଜାତୀୟ କଂଗ୍ରେସରେ ଯୋଗଦେଇ ଆନ୍ଦୋଳନରେ ସାମିଲ ହେଲେ । ୧୯୩୫ରେ ଲଣ୍ଡନ ଠାରେ ଗୋଲଟେବୁଲ ବୈଠକ ବସିଲା, ଏଥିରେ ଗିରି ଯୋଗ ଦେଇଥିଲେ ।

୧୯୩୪ ମସିହାରେ ଗଞ୍ଜାମର ବିଶାଖାପାଟଣା ନିର୍ବାଚନ ମଣ୍ଡଳୀରୁ ବିଧାନସଭା ପାଇଁ କଂଗ୍ରେସ ପକ୍ଷରୁ ପ୍ରାର୍ଥୀ ହୋଇ ବିଜୟୀ ହୋଇଥିଲେ । କିନ୍ତୁ କେନ୍ଦ୍ରରେ ରେଳବାଇ କର୍ମଚାରୀଙ୍କୁ ସରକାର ଛଟେଇ କରିଥିବାରୁ ତା'ର ପ୍ରତିବାଦ କରି ସେ ସଭ୍ୟ ପଦରୁ ଇସ୍ତଫା ଦେଲେ ।

ଥରେ ଏକ ନିର୍ବାଚନରେ ତାଙ୍କ ବିରୁଦ୍ଧରେ ରହୁଥିଲେ ଜଷ୍ଟିସ ଦଳର କେକିଲି ରାଜା । ଗିରିଙ୍କ ଠାରୁ ତାଙ୍କର ପ୍ରଭାବ ଅଧିକ ଥିଲା । ଜଣେ ସାମ୍ବାଦିକ ଗିରିଙ୍କୁ କହିଲେ । ଆପଣ ନିର୍ବାଚନ ଲଢୁଛନ୍ତି କାହିଁକି ? ଏ ବିରାଟ ରାଜଶକ୍ତି ପାଖରେ ଆପଣ କ'ଣ ବିଜୟୀ ହୋଇପାରିବେ । .... ସଙ୍ଗେ ସଙ୍ଗେ ଗିରି କହିଲେ ନିଶ୍ଚୟ । ମୁଁ ଜିତିବା ପାଇଁ ପରା ଏ ନିର୍ବାଚନ ଲଢୁଛି । ସତକୁ ସତ ଭୋଟ ଗଣତି ପରେ ଗିରି ଛଅ ହଜାର ଛଅ ଶହ

ଛଅଷଠି ଭୋଟରେ ବିଜୟୀ ହେଲେ । ଏ ବିଜୟ ପ୍ରତିଉରରେ ପଣ୍ଡିତ ନେହେରୁ ଅଭିନନ୍ଦନ ପତ୍ରରେ ଲେଖିଥିଲେ- ଗିରି କୋବିଲ ରାଜାଙ୍କୁ ପରାଜିତ କରି ଯେତିକି ସାଫଲ୍ୟ ଅର୍ଜନ କରିଛନ୍ତି, ତା'ଠାରୁ ବେଶି ସାଫଲ୍ୟ ସେ ଅର୍ଜନ କରିଛନ୍ତି ବେଙ୍ଗଲ ନାଗପୁର ରେଲୱେ କର୍ମଚାରୀଙ୍କ ଧର୍ମଘଟର ନେତା ଭାବେ ।

ମାନ୍ଦ୍ରାଜ ବିଧାନସଭା କଂଗ୍ରେସ ମନ୍ତ୍ରିମଣ୍ଡଳର ଚକ୍ରବର୍ତ୍ତୀ ରାଜଗୋପାଳଚାରୀଙ୍କ ନେତୃତ୍ୱରେ ଗଠିତ ହେଲା । ଶ୍ରୀ ଗିରି ଏଥିରେ ଶ୍ରମ, ଶିଳ୍ପ, ସମବାୟ, ବାଣିଜ୍ୟ, ମତ୍ସ୍ୟ ଓ ହରିଜନ କଲ୍ୟାଣ ମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କଲେ । ଏହାର ଦୁଇବର୍ଷ ପରେ ଶ୍ରୀ ଗିରି ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇ ପୁଣି ସ୍ୱାଧୀନତା ସଂଗ୍ରାମ ଓ ଶ୍ରମିକ ସଂଗଠନ ଗଠନ କଲେ । ୧୯୪୬ରେ ସେ ମାନ୍ଦ୍ରାଜ ବିଧାନସଭାକୁ ନିର୍ବାଚିତ ହେଲେ ଓ ସେ ସମୟରେ ମାନ୍ଦ୍ରାଜ ସହ ଆନ୍ଧ୍ରପ୍ରଦେଶ ମିଶି ରହିଥିଲା ।

୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା । ୧୯୪୦ରେ ଶ୍ରୀ ଗିରି ଶ୍ରୀଲଙ୍କାର ହାଇକମିଶନର ରୂପେ ନିଯୁକ୍ତ ହୋଇ ଶ୍ରୀଲଙ୍କାରେ ରହିଲେ ।

ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ନେହେରୁଙ୍କ ନିମନ୍ତ୍ରଣ କ୍ରମେ ଶ୍ରୀଲଙ୍କାରୁ ଫେରି କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଶ୍ରମ ମନ୍ତ୍ରୀ ରୂପେ ଯୋଗ ଦେଲେ । ମନ୍ତ୍ରୀ ପରିଷଦର କେତେକ ମନ୍ତ୍ରୀଙ୍କ ସହ ଶ୍ରମନୀତି ସଂପର୍କରେ ମତଭେଦ ସୃଷ୍ଟି ହେବାରୁ ମାତ୍ର ୩୦ ମାସ ପରେ ସେ ମନ୍ତ୍ରୀ ପଦରୁ ଇସ୍ତଫା ଦେଲେ, ମାତ୍ର ପଣ୍ଡିତ ନେହେରୁ ତାଙ୍କୁ ଯେତେ ଅନୁରୋଧ କଲେ ଶ୍ରୀ ଗିରି ତାଙ୍କ ଜିଦ୍‌ରେ ଅଟଳ ରହିଲେ ।

୧୯୫୭ ସାଧାରଣ ନିର୍ବାଚନରେ ଲୋକସଭା ପାଇଁ ପ୍ରାର୍ଥୀ ହୋଇ ହାରିଯିବା ପରେ ପଣ୍ଡିତ ନେହେରୁ ତାଙ୍କୁ ଉତ୍ତର ପ୍ରଦେଶର ରାଜ୍ୟପାଳ ଭାବରେ ନିଯୁକ୍ତି କରିଥିଲେ । ଏହାପରେ ୧୯୬୦ରେ ଉତ୍ତର ପ୍ରଦେଶ ଓ ପରେ ମହିଶୂର (ବର୍ତ୍ତମାନର କର୍ଣ୍ଣାଟକ)ର ରାଜ୍ୟପାଳ ହୋଇଥିଲେ । ଅସଜଡ଼ା କଂଗ୍ରେସ ସଂଗଠନକୁ ସଜାଡ଼ି ନେଇ ଗିରି ବେଶ୍ ଲୋକପ୍ରିୟତା ଅର୍ଜନ କଲେ । ଚାରିବର୍ଷ କେରଳ ରାଜ୍ୟରେ ରାଜ୍ୟପାଳ ଭାବରେ ନିଯୁକ୍ତି ପାଇଲେ ।

ଜାକିର ହୁସେନ ରାଷ୍ଟ୍ରପତି ଥିବା ବେଳେ ଉପରାଷ୍ଟ୍ରପତି ନିର୍ବାଚନରେ ଗିରି ନିର୍ବାଚିତ ହୋଇ ଭାରତର ଉପରାଷ୍ଟ୍ରପତି ହେଲେ । ଉପରାଷ୍ଟ୍ରପତି ଭାବେ ଶପଥ ନେବା ପରେ ସେ କହିଥିଲେ,''ଯେଉଁମାନେ ଏ ଆସନରେ ବସିଛନ୍ତି ସେମାନେ ସମସ୍ତେ ନିଜ

ନିଜ ଗୁଣରେ ବଳିୟାନ । ମାତ୍ର ମୁଁ ଜଣେ ସାଧାରଣ ମଣିଷ, ଏ ଆସନ ଅଳଙ୍କୃତ କରିଛି । ତେଣୁ ମୋତେ କଷ୍ଟକରି ସେମାନଙ୍କ ସହ ସମାନ ହେବାକୁ ହେବ ।''

ଦୁଇବର୍ଷ କାଳ ଉପରାଷ୍ଟ୍ରପତି ପଦରେ ରହିବା ପରେ ୧୯୬୯ ମେ ମାସ ତିନି ତାରିଖରେ ରାଷ୍ଟ୍ରପତି ହୁସେନଙ୍କର ମୃତ୍ୟୁ ହେଲା । ତେଣୁ ସମ୍ବିଧାନର ପରମ୍ପରା ଅନୁସାରେ ନୂତନ ରାଷ୍ଟ୍ରପତି ନିର୍ବାଚିତ ହେବାଯାଏ ଅସ୍ଥାୟୀ ରାଷ୍ଟ୍ରପତି ଭାବରେ କାର୍ଯ୍ୟ କଲେ । ଏତିକିବେଳେ ଭାରତର ରାଷ୍ଟ୍ରପତି ପଦକୁ ନେଇ କଂଗ୍ରେସ ଦଳ ଭିତରେ ଦେଖା ଦେଲା ବିରାଟ କନ୍ଦଳ । ମୋରାରଜୀ ଓ ଇନ୍ଦିରାଙ୍କୁ ନେଇ କଂଗ୍ରେସ ହେଲା ଦୁଇଭାଗ । ନିଲମ ସଞ୍ଜୀବ ରେଡ୍ଡୀ ଗୋଟିଏ ପଟେ, ଗିରି ହେଲେ ଅନ୍ୟପଟର ରାଷ୍ଟ୍ରପତି ପ୍ରାର୍ଥୀ । ଶେଷରେ ଗିରି ଏଥିରେ ବିଜୟୀ ହେଲେ ସତ, ରାଷ୍ଟ୍ରପତି ନିର୍ବାଚନକୁ ନେଇ ବିଦ୍ରୋହୀ କଂଗ୍ରେସ ସୁପ୍ରିମକୋର୍ଟରେ ଉପସ୍ଥାପନା କଲେ । ଏହାଫଳରେ ଶ୍ରୀ ଗିରି ରାଷ୍ଟ୍ରପତି ହୋଇ କୋର୍ଟର କାଠଗଡ଼ାରେ ସାକ୍ଷୀ ଦେଲେ । ମୋକଦମାରେ ସାକ୍ଷୀ ଦେବାର ଗିରି ହିଁ ପ୍ରଥମ ରାଷ୍ଟ୍ରପତି । ଶେଷରେ ସେ ବିଜୟୀ ହେଲେ ।

ଉପରାଷ୍ଟ୍ରପତି ଥିବାବେଳେ ତାଙ୍କୁ ଭାରତର ସର୍ବୋଚ୍ଚ ସମ୍ମାନ ଭାରତ ରତ୍ନ ପ୍ରଦାନ କରାଯାଇଥିଲା ।

୧୯୭୪ ମସିହା ଅଗଷ୍ଟ ୨୪ ତାରିଖରେ ସେ ରାଷ୍ଟ୍ରପତି ଦଳରୁ ଅବସର ନେଲେ । ଶ୍ରୀ ଗିରିଙ୍କର ଥିଲା ବଡ଼ ପରିବାର । ତାଙ୍କର ଚାରିପୁଅ, ସାତଟି ଝିଅ, ୩୯ ଜଣ ନାତି ନାତୁଣୀ ଥିଲେ ।

୧୯୮୦ ମସିହା ଜୁନ୍ ୨୩ ତାରିଖ ସାରା ଭାରତବାସୀଙ୍କୁ ଦୁଃଖ ସାଗରରେ ଭସାଇ ଦେଇ ସେ ଆରପାରିକୁ ଚାଲିଗଲେ ।

ଗିରି ଇହଜଗତରେ ନାହାନ୍ତି ସତ, କିନ୍ତୁ ତାଙ୍କର ଦେଶପ୍ରେମ ଓ ଶ୍ରମିକ ସଂଗଠନ ପାଇଁ ଆଜି ଅମର ହୋଇ ରହିଛନ୍ତି । ଓଡିଶାର ପ୍ରତିଟି ଧୂଳିକଣାରେ ତାଙ୍କରି କୀର୍ତ୍ତୀ ସ୍ତମ୍ଭ ଆଦି ତାଙ୍କର ଆବର୍ତ୍ତମାନର ଅଭାବକୁ ପୂରଣ କରୁଛି । ଶ୍ରୀଗିରି ହିଁ ଓଡିଶାର ପ୍ରଥମ ରାଷ୍ଟ୍ରପତି । ତାଙ୍କ ପାଇଁ ଓଡିଶା ଗର୍ବୀତ ମଧ୍ୟ ।





# ଫକିରୁଦ୍ଦିନ ଅଲ୍ଲୀ ଅହମ୍ମଦ

## (କାର୍ଯ୍ୟାଳୟ - ୧୯୭୪ ଅଗଷ୍ଟ ୨୪ରୁ ୧୯୭୭ ଫେବୃୟାରୀ ୧୧)

ଭାରତକୁ ସେତେବେଳେ ଇଂରେଜମାନେ ଶାସନ କରୁଥାନ୍ତି । ଇଂରେଜ ଗୋରାମାନଙ୍କ ଶାସନ ପରିଚାଳନାରେ ସାରା ଭାରତ ଅତିଷ୍ଠ ହୋଇ ଉଠିଥାଏ । ଏହାର ପ୍ରତିବାଦରେ ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନର ଡାକରା ଦେଇଥାନ୍ତି । ଏହି ଅସହଯୋଗ ଆନ୍ଦୋଳନରେ ସାମିଲ ହୋଇ ସାରା ଭାରତରେ ଦେଖା ଦେଇଥାଏ ବିଦ୍ରୋହ, ବିପ୍ଳବ, ହରତାଳ, ପ୍ରଜାମେଳି, ହେଲେ ଦୁର୍ଦ୍ଧର୍ଷ ଗୋରା ସିପାହୀ ଏ ସବୁର ମୁକାବିଲା ପାଇଁ ନିଜକୁ ପ୍ରସ୍ତୁତ କରି ନେଇଥାନ୍ତି ।

ଏମିତି ସୁଯୋଗରେ ଗୋରା ପାଇକମାନେ ଦିଲ୍ଲୀ ନଗରୀରେ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ଦଙ୍ଗା ସୃଷ୍ଟି କରିଦେଲେ । ହିନ୍ଦୁ ମୁସଲମାନମାନେ ଦଙ୍ଗାରେ ମାତି ଉଠିଲେ । ସାରା ଦିଲ୍ଲୀ ନଗରୀ ରକ୍ତରେ ଲାଲେ ଲାଲ ହୋଇଗଲା । କ'ଣ କରାଯିବ, ଗାନ୍ଧିଜୀ କିଛି ଚିନ୍ତା କରିପାରିଲେ ନାହିଁ । ଏତିକିବେଳେ ଅଲ୍ଲୀ ମାତ୍ର ୨୦ ବର୍ଷର ପତଳା ମୁସ୍‌ଲିମ ପିଲାଟିଏ ସେ ଦଙ୍ଗା ଭିତରକୁ ବାହାରି ଆସିଲେ । ପାଦରେ ଚାଲି ଚାଲି ସାରା ଦିଲ୍ଲୀ ନଗରୀ ବୁଲି ଲୋକଙ୍କୁ ବୁଝାଇଲେ । ଭାରତ ଆମର ଘର, ଆମେ ସବୁ ତାର ସନ୍ତାନ । ଏ ପରଦେଶୀ ବଣିକ ଦଳଙ୍କ କଥାରେ ଆମେ ଆମ ଭାରତକୁ ରକ୍ତାକ୍ତ କରିବ କାହିଁକି ?

ଆମ ଦେଶ ଭାରତରେ ଅନେକ ଧର୍ମର ଲୋକମାନେ ବସବାସ କରନ୍ତି । କିଏ ହିନ୍ଦୁ, କିଏ ମୁସଲିମ୍, କିଏ ଶିଖ୍, କିଏ ବୌଦ୍ଧ, କିଏ ଜୈନ । ଯାହାହେଉନା କାହିଁକି,

ଆମେ ଭାରତୀୟ ଆମେ ସମସ୍ତେ ଭାରତର ସନ୍ତାନ । ଯିଏ ଯେଉଁ ଧର୍ମ ପାଳନ କରୁ ବା ଯେଉଁ ଦେବ ଉପାସନା କରୁ ସମସ୍ତେ ହିଁ ଭାରତ ମାତାର ସେବା କରିବାକୁ ହେବ ।

ଏ ଭାଷା ଜଣେ ମୁସଲମାନ ଯୁବକ ମୁହଁରେ ଶୁଣି ସାରା ଦିଲ୍ଲୀ ନଗରୀ ସ୍ତମ୍ଭିଭୂତ ହୋଇଯାଇଥିଲା । ଭାଇଚାରର ପବିତ୍ର ସଂପର୍କକୁ ସାଂପ୍ରଦାୟିକତାର ଖଣ୍ଡାରେ ହାଣି ରକ୍ତାକ୍ତ କରୁଥିବା ହିନ୍ଦୁ ମୁସଲମାନମାନେ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ନିଜକୁ ଦୋଷୀ ମନେକରି ହିଂସା ପଥରୁ ଅପସରି ଆସି ସେ ପତଳା ମୁସଲମାନ ଯୁବକ ପାଖରେ ଆତ୍ମସମର୍ପଣ କରି ଶାନ୍ତି ପାଇଁ ପ୍ରାର୍ଥନା କଲେ । ସେ ଯୁବକ ଜଣଙ୍କ ଅନ୍ୟ କେହି ନୁହଁନ୍ତି । ସେ ହେଲେ ଭାରତର ପଞ୍ଚମ ରାଷ୍ଟ୍ରପତି ଫକିରୁଦ୍ଦିନ ଅଲ୍ଲୀ ଅହମ୍ମଦ ।

ଭାରତର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଜନ୍ମ ନେଇଥିଲେ ଫକିରୁଦ୍ଦିନ ।

୧୯୫୦ ମସିହା ମଇ ୧୩ ତାରିଖରେ ଫକିରୁଦ୍ଦିନ ଜନ୍ମ ନେଇଥିଲେ ଦିଲ୍ଲୀ ସହରରେ । ତାଙ୍କ ପିତାଙ୍କ ନାମ ଥିଲା ଜେଡ ଏ ଅହମ୍ମଦ ଓ ମାତାଙ୍କ ନାମ ଥିଲା ରେକୁୟା ସୁଲତାନ । ଜେଡ୍ ଏ ଅହମ୍ମଦ ଥିଲେ ଆସାମର ଅଧିବାସୀ । ସେଠାରେ ଏକ ଜମିଜମା ଗଣ୍ଡଗୋଳକୁ କେନ୍ଦ୍ର କରି ବିରାଟ ସମସ୍ୟା ମୁଣ୍ଡ ଟେକି ଉଠିଲା । ଏଇ ସମସ୍ୟାରୁ ନିଜକୁ ମୁକ୍ତ ରଖିବା ପାଇଁ ଜେଡ୍ ଏ ଅହମ୍ମଦ ପୈତୃକ ସଂପତିକୁ ପରିତ୍ୟାଗ କରି ଦିଲ୍ଲୀ ମହାନଗରୀକୁ ଚାଲି ଆସିଲେ । ସ୍ୱରାଜ ଆନ୍ଦୋଳନ ଯେତେବେଳେ ଖୁବ୍ ଜୋର୍‌ଦାର ମୁଣ୍ଡ ଟେକି ଉଠିଥାଏ, ସାରା ଭାରତ ବର୍ଷରେ ସ୍ୱରାଜ ପାଇଁ ଚାଲିଥାଏ କର ବା ମର ଆନ୍ଦୋଳନ । ଠିକ୍ ସେତିକିବେଳେ ତମାମ୍ ଭାରତରେ ନୂତନ ଆଲୋକର ଦିଗ୍‌ଦର୍ଶନ ଦେଇ ଜନ୍ମ ନେଇଥିଲେ ଫକିରୁଦ୍ଦିନ । ସତେ ଅବା ଭାରତ ମାତାର ଏ ଦୁର୍ଦ୍ଦିନରେ ସାହା ହେବାକୁ ଈଶ୍ୱର ଜଣେ ଦେବଦୂତଙ୍କୁ ପ୍ରେରଣ କରିଛନ୍ତି ।

ପିଲାଟି ଦିନରୁ ଫକିରୁଦ୍ଦିନ ସୁଖ ସ୍ୱାଚ୍ଛନ୍ଦ୍ୟ ଭିତରେ ବଢ଼ିଥିଲେ । କାରଣ ତାଙ୍କ ବାପା ଥିଲେ ଦିଲ୍ଲୀ ମହାନଗରୀର ବିରାଟ ଧନୀ ବ୍ୟକ୍ତି । ତେଣୁ ପ୍ରାଥମିକ ଶିକ୍ଷା ପାଇଁ ସେ ନିଜ ଘରେ ଟିଉସନ ସାର୍‌ଙ୍କ ଦ୍ୱାରା ପାଠ ପଢ଼ିଛନ୍ତି । ସେ ପିଲାଦିନ ଭାରି ସରଳ ବିଶ୍ୱାସୀ ଥିଲେ । ଜାତିରେ ସିନା ମୁସଲିମ୍ ହେଲେ ସେ ସବୁ ସଂପ୍ରଦାୟର ଧର୍ମଯାଜକମାନଙ୍କୁ ସମ୍ମାନ ଦେଉଥିଲେ । ସବୁ ଧର୍ମକୁ ଆପଣେଇ ନେଇ ନିଜକୁ ଭାରତୀୟ ବୋଲି ପରିଚୟ ଦେଉଥିଲେ । ଯେହେତୁ ଧନୀ ପରିବାରରେ ସେ ଜନ୍ମ ନେଇଥିଲେ, ତେଣୁ ଉଚ୍ଚଶିକ୍ଷା ପାଇଁ ତାଙ୍କର କିଛି ଅସୁବିଧା ହୋଇନଥିଲା । ସେ ଇଂଲଣ୍ଡର କେମ୍ବ୍ରିଜ ବିଦ୍ୟାଳୟରୁ ଉଚ୍ଚଶିକ୍ଷା ପାଇଥିଲେ ।

ଉତ୍ତରପ୍ରଦେଶର ଗୋଣ୍ଡା ସହରର ଏକ ହାଇସ୍କୁଲରେ ଅହମ୍ମଦ ଶିକ୍ଷାରମ୍ଭ

କରିଥିଲେ । ଏଠାରୁ କୃତିତ୍ୱର ସହ ଶିକ୍ଷା ସମାପ୍ତ କରିବା ପରେ ପଞ୍ଜାବ ବିଶ୍ୱବିଦ୍ୟାଳୟରେ ଶିକ୍ଷା ପାଇଁ ଯୋଗଦେଲେ । ସେଠାରୁ ୧୯୨୦ ମସିହାରେ କୃତିତ୍ୱର ସହ ମାଟ୍ରିକ୍ ପାଶ୍ କଲେ । ଯେହେତୁ ବାପା ତାଙ୍କର ଥିଲେ ଧନୀ ବ୍ୟକ୍ତି, ସେଥିପାଇଁ ତାଙ୍କର ଉଚ୍ଚଶିକ୍ଷା ପାଇଁ କୌଣସି ଅସୁବିଧା ହୋଇନଥିଲା । ସେ ଉଚ୍ଚଶିକ୍ଷା ପାଇଁ ଇଂଲଣ୍ଡ ଗଲେ । ୧୯୨୭ ମସିହାରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଇତିହାସରେ ଉଚ୍ଚ ଡିଗ୍ରୀ ହାସଲ କଲେ । ୧୯୨୮ରେ ବାରିଷ୍ଟରୀ ପାଶ୍ କରି ଓକିଲାତି ଆରମ୍ଭ କଲେ । ଦେଶ ଜାତିର ଉନ୍ନତି ଯାହାର ନିଶା ଆଉ ପେଶା ସେ ବା କାହିଁକି ଏ ଓକିଲାତି ପେଶାରେ ଆବଦ୍ଧ ହୋଇ ରହିବେ । ସେତିକିବେଳେ ଭାରତୀୟ ଜାତୀୟ କଂଗ୍ରେସ ଭାରତ ବର୍ଷକୁ ସ୍ୱାଧୀନତା ଆଣିବାକୁ ଜୋର୍‌ଦାର ସଂଗ୍ରାମ ଚଳାଇଥାଏ । ୧୯୩୧ରେ ଅହମ୍ମଦ ବାପୁଜୀଙ୍କ ଅସହଯୋଗ ଆନ୍ଦୋଳନରେ ସାମିଲ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ । ମୁସଲମାନ ହୋଇଥିଲେ ମଧ୍ୟ ଭାରତକୁ ନିଜ ମା'ଠାରୁ ଅଧିକ ସେ ଭଲ ପାଉଥିଲେ । ଏପରିକି ଦେଶ ମାତୃକା ପାଇଁ ଜୀବନ ଦେବାକୁ ମଧ୍ୟ ପ୍ରସ୍ତୁତ ଥିଲେ । ଭାରତୀୟ ଜାତୀୟ ଆନ୍ଦୋଳନ ଉତ୍ତର ପ୍ରଦେଶରେ ଖୁବ୍ ଜୋର୍‌ଦାର ଚାଲିଥାଏ । କରସେବକମାନେ ଖଦଡ଼ ପିନ୍ଧି ଗାନ୍ଧି ଟୋପି ଲଗାଇ ସ୍ଲୋଗାନ ଦେଇ ଚାଲିଥାନ୍ତି । ସେଇ କରସେବକମାନଙ୍କର ନେତୃତ୍ୱ ନେଉଥାନ୍ତି ଅଲ୍ଲୀ ଅହମ୍ମଦ । ଠିକ୍ ଏତିକିବେଳେ ଇଂରେଜ ଗୋରା ଫଉଜ ପହଞ୍ଚି ଲାଠି ପାହାର ଆରମ୍ଭ କରିଦେଲେ । ଗୋରା ସିପାହୀମାନଙ୍କ ଲାଠି ମାଡ଼ରେ ସବୁ କରସେବକମାନେ ଜୀବନ ନେଇ ଯିଏ ଯୁଆଡ଼େ ପଳାଇଗଲେ । ହେଲେ ଅଲ୍ଲୀ ଅହମ୍ମଦ ସେମିତି ଲାଠି ମାଡ଼ ଖାଉଥାନ୍ତି, ସ୍ଲୋଗାନ ଦେଉଥାନ୍ତି । ଗୋରା ଫଉଜ ତୁମେ ଭାରତ ଛାଡ଼ ।

ଗୋରା ସିପାହୀମାନେ ଆଶ୍ଚର୍ଯ୍ୟ ହୋଇଗଲେ ଜଣେ ମୁସଲମାନ ଯୁବକର ଦେଶପ୍ରୀତି ଦେଖି । ସାଥେ ସାଥେ କହିଲେ, ହେ ଯୁବକ, ତୁମେ ମୁସଲମାନ ହୋଇ ଏ ହିନ୍ଦୁମାନଙ୍କୁ କିପରି ଆପଣାର କରୁଛ । ଅଲ୍ଲୀ ଅହମ୍ମଦ ରାସ୍ତାରୁ ଧୂଳିଏ ମାଟି ଆଣି ଦେହରେ ବୋଳିଦେଇ କହିଲେ, ପରଦେଶୀ ବଣିକ ତୁମେମାନେ ବାହାରୁ ଆସି ଆମ ଦେଶରେ ଯେଉଁ ବିଭେଦର ମଞ୍ଜି ବୁଣିଦେଇଛ, ଭାବିଛ ସେଥିରେ ଭାରିତ ଖଣ୍ଡ ଖଣ୍ଡ ହେବ, ନାଁ, ଭାରତ ଆମମାନଙ୍କର ମା', ଜନ୍ମଭୂମି ସେ । ତାରି କୋଳରେ ହିନ୍ଦୁ ମୁସଲମାନର ପ୍ରଭେଦ ନାହିଁ । ସମସ୍ତେ ତାର ସନ୍ତାନ । ତାକୁ ସୁରକ୍ଷା ଦେବାକୁ ଆମେ ସଂକଳ୍ପବଦ୍ଧ ।

ଇଂରେଜ ଗୋରା ସିପାହୀମାନେ ସେଦିନ ଅଲ୍ଲୀ ଅହମ୍ମଦଙ୍କ ଯୁକ୍ତି ପାଖରେ

ପରାଜିତ ହୋଇଗଲେ । ଦେଶ ମାତୃକାର ସେବା ପାଇଁ ସେ ଅହରହ ସଂଗ୍ରାମ ଜାରି ରଖିଥିଲେ । ଏପରିକି ନିଜ ଜୀବନଠାରୁ ଦେଶ ମାତୃକାକୁ ବଡ଼ ମନେ କରୁଥିଲେ ।

ଫକିରୁଦ୍ଦିନ ତାଙ୍କ କର୍ମମୟ ଜୀବନର ପ୍ରଥମ ସୋପାନରେ ପଦାର୍ପଣ କରିଥିଲେ ପଞ୍ଜାବର ଲାହୋର ସହରରୁ । ସେ ସମୟରେ ପଞ୍ଜାବ ଥିଲା ମୁସଲିମ୍ ସଂପ୍ରଦାୟର ଦୁର୍ଗ । ଅନେକ ଉଚଶିକ୍ଷିତ ଯୁବକମାନେ ଲିଗ୍ ରାଜନୀତି ଆଡ଼କୁ ଆକୃଷ୍ଟ ହୋଇଥାନ୍ତି । ହେଲେ ଦେଶପ୍ରେମୀ ଫକିରୁଦ୍ଦିନ ନିଜ ସଂପ୍ରଦାୟ ଧର୍ମ ଦର୍ଶନ ଠାରୁ ଦୂରେଇ ଆସି ନିଜକୁ ଜଣେ ଭାରତୀୟ ଓ ଭାରତୀୟ ଜାତୀୟତାବାଦର ମହାନ୍ ସ୍ରୋତରେ ନିଜକୁ ସାମିଲ କରି ନେଇଥିଲେ ।

ସେହି ସମୟରେ ଅନେକ ମୁସଲିମ୍ ବୁଦ୍ଧିଜୀବୀମାନେ ଜାତୀୟ କଂଗ୍ରେସରେ ଯୋଗଦେଇ ଲିଗ୍ ପ୍ରବର୍ତ୍ତିତ ଦୁଇ ଜାତି ତତ୍ତ୍ୱର ବିରୋଧ କରୁଥିଲେ ଓ ଭାରତ ବର୍ଷରେ ଇଂରେଜ ଶାସନର ଅବସାନ ପାଇଁ ସଂଗ୍ରାମ କରୁଥିଲେ, ସେମାନଙ୍କ ସହ ଫକିରୁଦ୍ଦିନ ଥିଲେ ଅନ୍ୟତମ । ଅହମ୍ମଦ ମଧ୍ୟ ଥିଲେ ଜଣେ ଅତି ଉଚ୍ଚକୋଟୀର ଜାତୀୟବାଦୀ ଓ ନିଷ୍ଠାପର ଦେଶପ୍ରେମୀ । ସ୍ୱାଧୀନତା ସଂଗ୍ରାମରେ ଅହମ୍ମଦଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ଥିଲେ ଭାରତୀୟ ସଂସ୍କୃତି ଓ ଧର୍ମ ନିରପେକ୍ଷତାର ପ୍ରତୀକ ।

୧୯୩୧ରୁ ଶ୍ରୀ ଅହମ୍ମଦ ଭାରତୀୟ ଜାତୀୟ କଂଗ୍ରେସର ସଭ୍ୟ ରହି ଆସିଥିଲେ । ୧୯୩୫ରେ ଆସାମ ବିଧାନସଭାକୁ ନିର୍ବାଚିତ ହେଲେ । ସେ ସମୟରେଅନେକ ଗୁରୁତ୍ୱପୂର୍ଣ୍ଣ ପଦ ପଦବୀରେ ରହି ବହୁ ସମସ୍ୟାର ସମାଧାନ କରି ଆସିଛନ୍ତି । ଏହାପରେ ଆସାମ ପ୍ରଦେଶ କଂଗ୍ରେସ କମିଟି, ନିଖିଳ ଭାରତ କଂଗ୍ରେସ କମିଟି ଓ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଥିଲେ ।

୧୯୪୬ ମସିହାରୁ ୧୯୫୨ ମସିହା ପର୍ଯ୍ୟନ୍ତ ସେ ଆସାମର ଆଡ୍‌ଭୋକେଟ ଜେନେରାଲ ରହିଥିଲେ । ତାଙ୍କ ସମୟରେ ଆସାମ ଆଇନି ଜଗତରେ ଅଭୁତ-ପୂର୍ବ ପରିବର୍ତ୍ତନ ଆସିଥିଲା । ଅନେକ ଗୁରୁତ୍ୱପୂର୍ଣ୍ଣ କେଶ୍ ଗୁଡ଼ିକର ସମାଧାନ କରି ସେ ଆସାମ ଜନସାଧାରଣଙ୍କ ପ୍ରିୟପାତ୍ର ହୋଇପାରିଥିଲେ ।

୧୯୫୭ରୁ ୧୯୬୨ ଓ ୧୯୬୨ରୁ ୧୯୬୬ ମସିହା ପର୍ଯ୍ୟନ୍ତ ସେ ଆସାମ ବିଧାନସଭାର ସଭ୍ୟ ଥିଲେ । ଏହି ସମୟ ସୀମା ମଧ୍ୟରେ ଆସାମ ମନ୍ତ୍ରିମଣ୍ଡଳର ଅନେକ ଗୁରୁତ୍ୱପୂର୍ଣ୍ଣ ବିଭାଗରେ ମନ୍ତ୍ରୀ ରହି ଲୋକପ୍ରିୟତା ଅର୍ଜନ କରିଥିଲେ ।

୧୯୬୬ ମସିହାରେ ରାଜ୍ୟସଭାର ସଭ୍ୟ ଭାବରେ ନିର୍ବାଚିତ ହେବାପରେ, କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗ ଦେଲେ ।

ଶ୍ରୀ ଫକିରୁଦ୍ଦିନ ଥିଲେ ଜଣେ ସାଧାରଣ ବ୍ୟକ୍ତି । ସେ ଆସାମ ଓ ଭାରତ ବର୍ଷର ବହୁ ଗୁରୁତ୍ୱପୂର୍ଣ୍ଣ ପ୍ରଶାସନିକ ବିଭାଗରେ କାର୍ଯ୍ୟ କରି ଲୋକପ୍ରିୟତା ଅର୍ଜନ କରିଛନ୍ତି । ଜାତି, ବର୍ଣ୍ଣ ଓ ସାମ୍ପ୍ରଦାୟିକତାରୁ ବହୁ ଉର୍ଦ୍ଧ୍ୱରେ ରହି ଅଖଣ୍ଡ ଭାରତ ଗଠନ କରିବାକୁ ସେ ଗାନ୍ଧିଜୀଙ୍କ ନିତୀ ଆଦର୍ଶ ସହ ନିଜକୁ ସାମିଲ୍ କରି ନେଇଥିଲେ । ଏଥିପାଇଁ ସେ ତାଙ୍କର ଅନେକ ବନ୍ଧୁ ଆତ୍ମୀୟମାନଙ୍କୁ ହରାଇବାକୁ ପଡ଼ିଛି । ସେ ସର୍ବଦା କହୁଥିଲେ -

''ମାଟି ମା'ର ଆହ୍ୱାନ ପାଖରେ ଜାତି ସଂପ୍ରଦାୟ ଏ ସବୁ ତୁଚ୍ଛ ।''

୧୯୭୪ ମସିହା ଅଗଷ୍ଟ ୨୪ ତାରିଖରେ ଭାରତର ରାଷ୍ଟ୍ରପତି ଭି.ଭି. ଗିରିଙ୍କ କାର୍ଯ୍ୟକାଳ ପୂରିଯିବାରୁ ଅନେକ କଂଗ୍ରେସ ନେତା ଭାରତର ରାଷ୍ଟ୍ରପତି ପାଇଁ ବ୍ୟସ୍ତ ଥିବାବେଳେ ଫକିରୁଦ୍ଦିନ ଅଲ୍ଲୀ ଅହମ୍ମଦଙ୍କ ନାଁ କଂଗ୍ରେସ ମହଲରେ ଆନନ୍ଦର ହଲ୍ଲୋଳ ସୃଷ୍ଟି କଲା ଓ ସେ କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇ ରାଷ୍ଟ୍ରପତି ଭାବରେ ୧୯୭୪ ଅଗଷ୍ଟ ୨୪ ତାରିଖରେ ଶପଥ ଗ୍ରହଣ କଲେ । ସେ ଥିଲେ ନିଷ୍କପଟ ଓ ବନ୍ଧୁ ବଂଧୁବତ୍ସଳ ବ୍ୟକ୍ତି । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସେ ଭାରତର ପ୍ରତ୍ୟକ ନାଗରିକମାନଙ୍କ ମନ ହୃଦୟକୁ ଜୟ କରିପାରିଥିଲେ । ଫକିରୁଦ୍ଦିନଙ୍କ ସମୟରେ ସମ୍ବିଧାନର ବ୍ୟାପକ ପରିବର୍ତ୍ତନ ହୋଇଥିଲା । ସେହି ସମୟରେ ଜରୁରୀ କାଳୀନ ପରିସ୍ଥିତି ଜାରି କରାଗଲା । ତେବେ ରାଷ୍ଟ୍ରପତିଙ୍କ ସ୍ୱାକ୍ଷରରେ ହିଁ ତାହା ଜାରି କରାଯାଇଥିଲା ।

୧୯୭୭ ମସିହା ଫେବୃୟାରୀ ମାସର ପ୍ରଥମ ସପ୍ତାହରେ ଶ୍ରୀ ଅହମ୍ମଦ ଦକ୍ଷିଣ-ପୂର୍ବ ଏସିଆର କେତକ ଦେଶକୁ ଗସ୍ତରେ ଯାଇ ମାଲଏସିଆର କୁଆଲାଲମପୁର ଠାରେ ହଠାତ୍ ଅସୁସ୍ଥ ହୋଇପଡ଼ିଲେ । ସେଠାରୁ ତାଙ୍କ ଗସ୍ତ କାର୍ଯ୍ୟକ୍ରମ ଶେଷ କରି ୧୦ ତାରିଖ ଦିନ ହିଁ ଭାରତ ପ୍ରତ୍ୟାବର୍ତ୍ତନ କଲେ ।

ତା'ପରଦିନ ୧୧ ତାରିଖ ସକାଳ ୮ଟା ୫୨ ମିନିଟ୍‌ରେ ଭାରତର ରାଜଧାନୀ ଦିଲ୍ଲୀରେ ରାଷ୍ଟ୍ରପତି ଭବନଠାରେ ମୃତ୍ୟୁବରଣ କରିଥିଲେ । ତାଙ୍କରି ମୃତ୍ୟୁରେ ଭାରତ ବାହିଁକି ସାରା ବିଶ୍ୱ ରାଜନୀତି ମହଲ ହତଚକିତ ହୋଇଥିଲା । ଜାକିର ହୁସେନଙ୍କ ପରି ଫକିରୁଦ୍ଦିନ ମଧ ରାଷ୍ଟ୍ରପତି ପଦରେ ଥାଇ ମୃତ୍ୟୁବରଣ କରିଥିଲେ । ଜୀବନର ଶେଷ ମୂହର୍ତ୍ତ ପର୍ଯ୍ୟନ୍ତ ସେ ଦେଶର ସେବାରେ ନିଜକୁ ନିୟୋଜିତ କରିଥିଲେ । ସମସ୍ତ ଭାରତୀୟଙ୍କ ହୃଦୟରେ ସେ ଆଜି ମଧ ଜୀବିତ ଅଛନ୍ତି ବୋଲି କହିବାକୁ ହେବ । ତାଙ୍କର ନିରଳସ ବନ୍ଧୁବତ୍ସଳ ଭାରତୀୟଙ୍କ ଜନମାନସରେ ସବୁଦୀନ ପାଇଁ ତାଙ୍କୁ ସ୍ମରଣୀୟ କରିରଖିବ ।





# ନୀଲମ ସଂଜୀବ ରେଡ୍ଡୀ

## (କାର୍ଯ୍ୟକାଳ - ୧୯୭୭ ଜୁଲାଇ ୨୫ରୁ ୧୯୮୨ ଜୁଲାଇ ୨୫)

୧୯୩୧ ମସିହାର କଥା ଇଂରେଜ ସରକାରଙ୍କ ବିରୁଦ୍ଧରେ ସାରା ଭାରତରେ ଗଣ ଜାଗରଣ ମୁଣ୍ଡ ଟେକି ଉଠିଥାଏ । ଗୋରା ସିପାହୀମାନଙ୍କ ଲାଠି ଗୁଳିକୁ ଭୟ ନ କରି ଭାରତୀୟମାନେ ଅସହଯୋଗ ଆନ୍ଦୋଳନରେ ମାତି ଉଠିଥାନ୍ତି । ଗାନ୍ଧିଜୀଙ୍କ ଡାକରେ ଛାତ୍ର ଆନ୍ଦୋଳନ ଖୁବ୍ ଜୋର୍ ମୁଣ୍ଡ ଟେକି ଉଠିଥାଏ । କଲେଜ ଛାତ୍ରମାନେ ପାଠପଢ଼ା ଛାଡ଼ି ଆନ୍ଦୋଳନରେ ସାମିଲ ହୋଇଯାଉଥାନ୍ତି । ଆନ୍ଧ୍ରର ଅନନ୍ତପୁର ଆର୍ଟସ କଲେଜ ସେଦିନ ଥାଏ ଗୋରା ସିପାହୀଙ୍କ କଡ଼ା ଭିତରେ । ହଜାର ହଜାର ଛାତ୍ର ସେଦିନ ଇଂରେଜ ସରକାରଙ୍କ ବିରୁଦ୍ଧରେ ଧ୍ୱନି ଦେଇ ହରତାଳ ଆରମ୍ଭ କରି ଦେଇଥାନ୍ତି । ଛାତ୍ର ଆନ୍ଦୋଳନର ମୁକାବିଲା କରିବା ପାଇଁ ଇଂରେଜ ସରକାର ଦୃଢ଼ ପଦକ୍ଷେପ ମାନ ନେଇଥାନ୍ତି । ତଥାପି ଛାତ୍ରମାନେ ହରତାଳ ଛାତ୍ରମେଳି ଓ ଆନ୍ଦୋଳନ ବନ୍ଦ କରି ନଥାନ୍ତି ।

ଅନନ୍ତପୁର ଆର୍ଟସ କଲେଜର ନାଁ ସାରା ଭାରତରେ ଥାଏ । ସେ କଲେଜ ଉପରେ ତ୍ରିରଙ୍ଗା ପତାକା ଉଡ଼ାଇବ କିଏ । ଚାରିପଟେ ଗୋରା ସିପାହୀ ଜଗି ରହିଥାନ୍ତି । ଏ ପରିସ୍ଥିତିରେ ଚାରି ମହଲା ଅଫିସ୍ ରୁମରେ ଜାତୀୟ ପତାକା ଉଡ଼ାଇବାକୁ କାହାର ସାହସ ହେଲାନି । ହେଲେ ଅନନ୍ତପୁର ଆର୍ଟସ କଲେଜର ଶେଷ ବର୍ଷର ଛାତ୍ର ଜଣେ ହାତରେ ତ୍ରିରଙ୍ଗା ପତାକା ଧରି ଛାତ୍ର ମେଳିର ଭିତରକୁ ଆସି କହିଲେ, ମୁଁ ଅଫିସ୍ ଉପରେ ଚଢ଼ି ପତାକା ଲଗାଇବି । ସବୁ ଛାତ୍ର ଆଶ୍ଚର୍ଯ୍ୟ ହୋଇଗଲେ । ଦୁର୍ବଳ ଯୁବକ, ଗୋରା ଫଉଜଙ୍କ ଗୁଳିରେ ଶୁଖିଲା ପତ୍ର ପରି ଉଡ଼ି ପଡ଼ିବ । ସେ ପୁଣି ଅଫିସ ଉପରେ ଚଢ଼ି ପତାକା ଲଗାଇବ । ସମସ୍ତେ ହସି ଉଠିଲେ ।

ହେଲେ ସେଦିନ ହଜାର ହଜାର ଛାତ୍ର ଜନତାଙ୍କୁ ଆଶ୍ଚର୍ଯ୍ୟ କରି ସେ ପତଳା ଯୁବକ ଜଣକ ଅନନ୍ତପୁରମ ଆର୍ଟ୍‌ସ କଲେଜ ଛାତରେ ତ୍ରିରଙ୍ଗା ପତାକା ଧରି ଦୃଢ଼ କଣ୍ଠରେ କହିଥିଲା ଗୋରା ସିପାହୀ ତୁମେ ଭାରତ ଛାଡ଼ । ସ୍ୱାଧୀନ ଭାରତ କି ଜୟ ।

ସାରା ଗୋରା ସିପାହୀ ଆଶ୍ଚର୍ଯ୍ୟ ହୋଇଗଲେ । କିଏ ଏହି ଯୁବକ ? ସେ ଯୁବକ ଜଣକ ଅନ୍ୟ କେହି ନୁହେଁ ସେ ଭାରତର ପୂର୍ବତନ ରାଷ୍ଟ୍ରପତି ନୀଲମ ସଂଜୀବ ରେଡ୍ଡୀ । ୧୯୧୩ ମସିହା ମେ ମାସର ୧୯ ତାରିଖରେ ନୀଲମ ଆନ୍ଧ୍ର ପ୍ରଦେଶର ଅନନ୍ତପୁରମ ଜିଲ୍ଲାର ଇଲୁରୁ ଗ୍ରାମରେ ଏକ କୃଷକ ପରିବାରରେ ଜନ୍ମ ନେଇଥିଲେ । ତାଙ୍କ ଜନ୍ମ ବେଳକୁ ହଠାତ୍ ରାତିରେ ଘରଟି ବିରାଟ ଆଲୋକରେ ଆଲୋକିତ ହୋଇଉଠିଲା । ତାଙ୍କ ବାପା ଥିଲେ ସାଧାରଣ କୃଷକ । ସେ ଏହାର ଅର୍ଥ କ'ଣ ବୁଝିପାରି ନଥିଲେ । ତେଣୁ ଭୟ ପାଇ ଗାଁ ଭିତରକୁ ଧାଇଁ ପଳାଇଲେ । ଏକଥା ଇଲୁରୁ ଗାଁର ଲୋକମାନେ ବିଶ୍ୱାସ କରିପାରି ନଥିଲେ । ନିଜେ ଆସି ଦେଖିଲେ ସତକୁ ସତ ନବଜାତକ ଶିଶୁଟିର ଦେହରୁ ଏକ ଅସାଧାରଣ ଜ୍ୟୋତି ବାହାରୁଛି । ସେ ଶିଶୁଟି ଏକ ଦେବ ଶିଶୁ ବୋଲି ସମସ୍ତେ କହିଲେ । ଠିକ୍ ସେତିକିବେଳେ ସେ ବାଟଦେଇ ଏକ ସାଧୁବାବା ଯାଉଥିଲେ । ସେ ଏକଥା ଶୁଣି ଆସି ଶିଶୁଟିକୁ ଦେଖି ଆନନ୍ଦିତ ହୋଇଗଲେ ଓ ହସି ହସି କହିଲେ, ହେଇଲୁରୁ ଗ୍ରାମବାସୀ ତୁମମାନଙ୍କର ସୁଖର ଦିନ ଏବେ ଆସିଲା । ଏ ପିଲାଟି ଦିନେ ସାରା ଭାରତ ବର୍ଷର ନାଁ ରଖିବ । ଏ କଥା ଶୁଣି ଇଲୁରୁ ଗାଁର ଲୋକମାନେ ଆନନ୍ଦରେ ସାତଦିନ ଧରି ଆନନ୍ଦ ଉତ୍ସବ ପାଳନ କଲେ ।

୧୯୧୯ ମସିହାରେ ମାନ୍ଦ୍ରାଜର ଆଡ଼ିଆଠାରେ ଥିବା ଥିଓସୋଫିକାଲ ହାଇସ୍କୁଲରେ ନାମ ଲେଖାଇଲେ । ଗରିବ କୃଷକ ପରିବାରରେ ଜନ୍ମ ହେଲେ ବି ରେଡ୍ଡୀଙ୍କର ଶିକ୍ଷା ପ୍ରତି ଥିଲା ଅହେତୁକ ଆଗ୍ରହ । ବହିପତ୍ର କିଣି ନ ପାରି ସେ କେବଳ ଶ୍ରେଣୀରେ ଶିକ୍ଷକମାନଙ୍କ ଠାରୁ ଶୁଣି ଶୁଣି ପାଠ ମନେ ରଖୁଥିଲେ । ଆଶ୍ଚର୍ଯ୍ୟର କଥା, ଥରେ ଯାହା ମନେ ରଖୁଥିଲେ ତାକୁ ଏତେ ଶୀଘ୍ର ସେ ପାଶୋରି ପାରୁନଥିଲେ । ତାହା କମ୍ପ୍ୟୁଟର ପରି ତାଙ୍କ ବ୍ରେନ୍ ଭିତରେ ଟାଇପ୍ ହୋଇ ରହୁଥିଲା । ଶ୍ରେଣୀରେ ପିଲାମାନେ ଆଶ୍ଚର୍ଯ୍ୟ ହୋଇଯାଉଥିଲେ । ବହିପତ୍ର ନଥାଇ ରେଡ୍ଡୀ କିପରି ଶ୍ରେଣୀରେ ପ୍ରଥମ ହେଉଛି । ତାର ବେଶଭୂଷା, ଚାଲିଚଳନ ଦେଖି ସହପାଠୀ ଠାରୁ ଶ୍ରେଣୀର ଶିକ୍ଷକ ପର୍ଯ୍ୟନ୍ତ ସମସ୍ତେ ତାକୁ ଦୟା ଦେଖାଉଥିଲେ । ତାଙ୍କର ଧିରସ୍ଥିର ନମ୍ର ସ୍ୱଭାବ ସମସ୍ତଙ୍କ ମନକୁ କିଣି ନେଉଥିଲା । ସ୍କୁଲ ପାଠ ଶେଷ କରିବା ପରେ କଲେଜ ପଢ଼ିବା ପାଇଁ ତାଙ୍କର ପ୍ରବଳ ଇଚ୍ଛା ହେଲା, ହେଲେ ଏତେ ଧନ କେଉଁଠୁ । ସହପାଠୀମାନଙ୍କ ସାହାଯ୍ୟ ସହଯୋଗରେ ରେଡ୍ଡୀ ଅନନ୍ତପୁରମ ଅର୍ଟ୍‌ସ କଲେଜରେ ନାମ ଲେଖାଇଲେ ।

୧୯୩୧ ସେ କଲେଜରେ ତୃତୀୟ ବର୍ଷର ଛାତ୍ର ଥିବାବେଳେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନରେ ସାମିଲ ହେଲେ । ଏଥିପାଇଁ ଇଂରେଜ ସରକାରଙ୍କ ରୋଷ ଚକ୍ଷୁର ଶିକାର ହୋଇଛନ୍ତି । ହେଲେ ତାଙ୍କର ତିଳେହେଲେ ଭୟ ନଥିଲା । ଦେଶ ମାଟିର ଆହ୍ୱାନ ତାଙ୍କୁ ଏପରି ପାଗଳ କରିଦେଇଥିଲା ସେ ସବୁକିଛିକୁ ପାଶୋରି ଦେଉଥିଲେ । କୃଷକ ପରିବାରର ଆର୍ଥିକ ଅନାଟନ ତାଙ୍କୁ ବ୍ୟତିବ୍ୟସ୍ତ କରୁଥିଲା ତେଣୁ ସେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଦୃଢ଼ତାର ସହ ଇଂରେଜମାନଙ୍କ ମୁକାବିଲା କରୁଥିଲେ । ତାଙ୍କର ଏଇ ନିର୍ଭୀକତା ଗୁଣ ପାଇଁ ସେ ଛାତ୍ର ଥିବାବେଳେ ସେ ଆନ୍ଧ୍ରପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସଂପାଦକ ଭାବରେ ନିର୍ବାଚିତ ହୋଇ  ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରି ସେ ଅଧିକ ପାଠ ପଢ଼ିପାରି ନଥିଲେ । ବିଭିନ୍ନ ସଭା ସମିତିରେ ଯୋଗଦେଇ ଇଂରେଜମାନଙ୍କ ବିରୁଦ୍ଧରେ ଜନମତ ସୃଷ୍ଟି କରିବାକୁ ସେ ଦୃଢ଼ ସ୍ୱରରେ ଭାଷଣ ଦେଉଥିଲେ । ଏଥିପାଇଁ ଇଂରେଜ ସରକାର ରେଡ୍ଡୀଙ୍କୁ ବାରମ୍ବାର ଧରିନେଇ ଜେଲ୍‌ରେ ରଖୁଥିଲେ । ଏଥିରେ ମଧ୍ୟ ରେଡ୍ଡୀ ବିଚଳିତ ନହୋଇ ଦେଶ ମାତୃକାର ସେବାରେ ଆତ୍ମୋତ୍ସର୍ଗ କରିଥିଲେ ।

ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନରେ ସାମିଲ ହୋଇ ସେ ଗାଁ ଗାଁ ବୁଲି ସ୍ୱରାଜ ଆନ୍ଦୋଳନର ଆଭିମୁଖ୍ୟ ବିଷୟରେ ଆନ୍ଧ୍ରବାସୀଙ୍କୁ ସଚେତନ କରାଇଥିଲେ । କୁଟି ଖାଅ କାଟି ପିନ୍ଧ ନୀତିକୁ ସାରା ଆନ୍ଧ୍ରପ୍ରଦେଶରେ ବୁଲି ବୁଲି ପ୍ରଚାର କରିଥିଲେ । ସ୍ୱାଧୀନତା ଆମର ଜନ୍ମଗତ ଅଧିକାର । ଏଥିରୁ ଆମକୁ କେହି ବିଚ୍ୟୁତ କରିପାରିବେ ନାହିଁ ବୋଲି ଜନସଚେତନତା ସୃଷ୍ଟି କରି ୧୯୩୮ରେ ଇଂରେଜ ସରକାରଙ୍କ ବିଷ ଦୃଷ୍ଟିର ଶିକାର ହୋଇ ଜେଲ୍ ଗଲେ ଏବଂ ଦୁଇବର୍ଷ ଜେଲ୍‌ରେ ରହିଥିଲେ । ୧୯୪୬ରେ ଶ୍ରୀ ରେଡ୍ଡୀ ମାନ୍ଦ୍ରାଜ ବିଧାନସଭାକୁ କଂଗ୍ରେସ ପକ୍ଷରୁ ପ୍ରାର୍ଥୀ ହୋଇ ନିର୍ବାଚିତ ହୋଇଥିଲେ । ତାଙ୍କର କାର୍ଯ୍ୟ ଦକ୍ଷତା ଓ ସଚୋଟ ପଣିଆ ପାଇଁ ସେ ବିଧାୟକ ଦଳର ସଂପାଦକ ଭାବରେ ନିର୍ବାଚିତ ହୋଇଥିଲେ ।

୧୯୪୯ରେ ଶ୍ରୀ ରେଡ୍ଡୀ ମାନ୍ଦ୍ରାଜର ଜଙ୍ଗଲ ଓ ଗୃହ ନିର୍ମାଣ ମନ୍ତ୍ରୀ ହୋଇ ଆନ୍ଧ୍ରର ଜଙ୍ଗଲ ଗୃହ ନିର୍ମାଣ ବିଭାଗରେ ଅନେକ ଗୁରୁତ୍ୱପୂର୍ଣ୍ଣ ଆଇନ ପ୍ରଣୟନ କରିଥିଲେ । ୧୯୫୧ରେ ମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଆନ୍ଧ୍ର ପ୍ରଦେଶ କଂଗ୍ରେସ କମିଟିର ସଭାପତି ଭାବରେ ନିର୍ବାଚିତ ହୋଇ ଆନ୍ଧ୍ର ପ୍ରଦେଶର ଅସଜଡ଼ା କଂଗ୍ରେସ ଦଳକୁ ସଜାଡ଼ିବାର ମୁଖ୍ୟ ଭୂମିକା ନେଇଥିଲେ । ତାଙ୍କରି ନେତୃତ୍ୱରେ କଂଗ୍ରେସ ଦଳର ଅନେକ ଗୁଡ଼ିଏ ସମସ୍ୟାର ସମାଧାନ ହୋଇଥିଲା । ୧୯୫୧ରେ ସେ ପୁଣି ମାନ୍ଦ୍ରାଜ ବିଧାନସଭାକୁ ନିର୍ବାଚିତ ହୋଇ ନିଜର ସଚ୍ଚୋଟପଣିଆ ନିର୍ଭୀକତା ଗୁଣ ପାଇଁ ମନ୍ତ୍ରୀ ପରିଷଦର ପ୍ରିୟଭାଜନ

ହୋଇ ୧୯୫୩ରେ ଉପମୁଖ୍ୟମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ୧୯୫୫ରେ ପୁନରାଏ ବିଧାନସଭାକୁ ନିର୍ବାଚିତ ହେଲେ ଓ ପୁଣି ନିଜର ଉପମୁଖ୍ୟମନ୍ତ୍ରୀ ପଦ ବଜାଏ ରଖିଲେ । ୧୯୫୬ରେ ରାଜ୍ୟ ପୁନର୍ଗଠନ ହେବା ପରେ ଆନ୍ଧ୍ର ଓ ମାନ୍ଦ୍ରାଜ ଦୁଇ ଗୋଟି ରାଜ୍ୟରେ ବିଭକ୍ତ ହେଲା । ଦୁଇଟି ରାଜ୍ୟରେ ବିଧାନସଭା ଗଠିତ ହେଲା । ୧୯୫୬ରେ ସେ ନୂତନ ଆନ୍ଧ୍ର ପ୍ରଦେଶର ପ୍ରଥମ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରି ଆନ୍ଧ୍ର ପ୍ରଦେଶର ବହୁବିଧ ଉନ୍ନତି ପାଇଁ ଅନେକ ଗୁରୁତ୍ୱପୂର୍ଣ୍ଣ ଆଇନି ମାନ ପ୍ରଣୟନ କରି ଜନପ୍ରିୟ ମୁଖ୍ୟମନ୍ତ୍ରୀ ଭାବରେ ପରିଚିତ ହେଲେ । ୧୯୫୯ରେ ଆନ୍ଧ୍ର ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଭାରତୀୟ ଜାତୀୟ କଂଗ୍ରେସରେ ସର୍ବଭାରତୀୟ ସଭାପତି ହେଲେ । ଏହି ସମୟରେ କଂଗ୍ରେସ ପାଇଁ ଅନେକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ମାନ ନେଇ ଜାତୀୟ କଂଗ୍ରେସକୁ ଲୋକପ୍ରିୟ କରାଇଥିଲେ । ୧୯୬୨ରେ ପୁନରାଏ ସେ ଆନ୍ଧ୍ର ପ୍ରଦେଶର ମୁଖ୍ୟମନ୍ତ୍ରୀ ହେଲେ । ଏହି ସମୟରେ ରେଡ୍ଡୀ ଆନ୍ଧ୍ର ପ୍ରଦେଶକୁ ଏକ ସର୍ବାଙ୍ଗ ସୁନ୍ଦର ରାଜ୍ୟରେ ପରିଣତ କରିବାର ଦୃଢ଼ ସଂକଳ୍ପ ନେଇ କାର୍ଯ୍ୟକରିଥିଲେ ।

ଲାଲବାହାଦୁର ଶାସ୍ତ୍ରୀଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ, ଶାସ୍ତ୍ରୀ ଜଣେ ସର୍ଚ୍ଚୋଟ ଓ ନିର୍ଭୀକ ବ୍ୟକ୍ତିର ସନ୍ଧାନରେ ଥିଲେ । ଆନ୍ଧ୍ର ପ୍ରଦେଶର ଏକ ସର୍ବଭାରତୀୟ ଉତ୍ସବରେ ଯୋଗଦେଇ ସେ ନୀଲମ ସଂଜୀବ ରେଡ୍ଡୀଙ୍କ ବ୍ୟକ୍ତିତ୍ୱର ସନ୍ଧାନ ପାଇଲେ ଅବଶ୍ୟ ଆଗରୁ ରେଡ୍ଡୀଙ୍କ ବ୍ୟକ୍ତିତ୍ୱ ସମ୍ବନ୍ଧରେ ଅବଗତ ଥିଲେ, ତଥାପି ରେଡ୍ଡୀଙ୍କର ଏତେ ନିକଟତର ହୋଇନଥିଲେ କି ତାଙ୍କ କାର୍ଯ୍ୟ ଦକ୍ଷତାର ପ୍ରମାଣ ପାଇନଥିଲେ । ରେଡ୍ଡୀଙ୍କ ନିକଟତର ହୋଇ ତାଙ୍କ ସରଳ ନିଷ୍କପଟ ବ୍ୟକ୍ତିତ୍ୱର ଆଭାସ ପାଇ ସେ ଖୁସି ହୋଇ ତାଙ୍କୁ ତାଙ୍କ ମନ୍ତ୍ରିମଣ୍ଡଳରେ ସଦସ୍ୟ ହେବାକୁ ନିମନ୍ତ୍ରଣ ଜଣାଇଲେ । ରେଡ୍ଡୀ ମଧ୍ୟ ଆଗରୁ ଶାସ୍ତ୍ରୀଙ୍କୁ ସମ୍ମାନ ଦିଅନ୍ତି । ତାଙ୍କ ନିମନ୍ତ୍ରଣକୁ ସମ୍ମାନ ଜଣାଇ ରେଡ୍ଡୀ ମନ୍ତ୍ରିମଣ୍ଡଳରେ ଯୋଗଦେବାକୁ ସମ୍ମତି ଜଣାଇଥିଲେ । ୧୯୬୪ରେ ସେ ଆନ୍ଧ୍ର ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଜୁନ୍ ମାସ ୯ ତାରିଖରେ ଲାଲବାହାଦୁର ଶାସ୍ତ୍ରୀଙ୍କ ମନ୍ତ୍ରିମଣ୍ଡଳରେ ଖଣି ଓ ଇସ୍ପାତ ମନ୍ତ୍ରୀ ଭାବରେ ଶପଥ ନେଲେ । ତାଙ୍କ ସମୟରେ ଓଡ଼ିଶାର ଖଣି ଓ ଇସ୍ପାତ ଶିଳ୍ପର ଅଭୂତପୂର୍ବ ଉନ୍ନତି ସାଧିତ ହୋଇଛି ଓ ଖଣି ଇସ୍ପାତ ଶ୍ରମିକମାନଙ୍କର ଅନେକ ସମସ୍ୟାର ସମାଧାନ ମଧ୍ୟ ହୋଇଛି । ଏହାପରେ ଲାଲବାହାଦୁର ଶାସ୍ତ୍ରୀ ତାସ୍‌କେଣ୍ଟ ଚୁକ୍ତିର ସମାଧାନ କରି ଇହଲୀଳା ସମ୍ବରଣ କରିବା ପରେ ଶ୍ରୀମତୀ ଇନ୍ଦିରା ଗାନ୍ଧି ହେଲେ ଭାରତର ପ୍ରଧାନମନ୍ତ୍ରୀ ।

୧୯୬୬ରୁ ୧୯୬୭ ପର୍ଯ୍ୟନ୍ତ ରେଡ୍ଡୀ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ ମନ୍ତ୍ରିମଣ୍ଡଳରେ ପରିବହନ ଓ ବେସାମରିକ ବିମାନ ଚଳାଚଳ ମନ୍ତ୍ରୀ ଭାବରେ ଯୋଗଦେଲେ । ଏହି ସମୟ ଭିତରେ ନିଜର କାର୍ଯ୍ୟଦକ୍ଷତା ପାଇଁ ଇନ୍ଦିରା ଗାନ୍ଧିଙ୍କର ପ୍ରିୟପାତ୍ର ହୋଇଥିଲେ । ୧୯୬୭ରେ

ସେ ଲୋକସଭାରେ ବାଚସ୍ପତି ଭାବରେ ନିର୍ବାଚିତ ହେଲେ । ହେଲେ ନିଜର ସଚ୍ଚୋଟ ପଣିଆ ପାଇଁ କେତେକ ଗୁରୁତ୍ୱପୂର୍ଣ୍ଣ ସମସ୍ୟାର ସମାଧାନ ପାଇଁ ଦେଶର ହିତ ଦୃଷ୍ଟିରୁ ଦଳର ସ୍ୱାର୍ଥକୁ ବଳି ଦେଇଥିଲେ । ଏହାପଳରେ ଦଳୀୟ ନେତାମାନେ ତାଙ୍କର ବିରୋଧାଚରଣ କଲେ । ଏଥିପ୍ରତି ରେଡ୍ଡୀଙ୍କର ଭ୍ରୂକ୍ଷେପ ନଥିଲା । କାରଣ ଦେଶର ହିତ ପାଇଁ ସେ ସବୁକିଛିକୁ ପରିତ୍ୟାଗ କରିବାକୁ ପ୍ରସ୍ତୁତ ଥିଲେ । କାରଣ ଦେଶ ତାଙ୍କ ପାଖରେ ଥିଲା ସବୁକିଛି ।

୧୯୬୭ରେ ଜାକିର ହୁସେନଙ୍କ ମୃତ୍ୟୁ ପରେ ଦେଶର ପରବର୍ତ୍ତୀ ରାଷ୍ଟ୍ରପତି ପଦ ପାଇଁ କଂଗ୍ରେସ ଦଳ ଭିତରେ ଦେଖାଗଲା ବିରାଟ କନ୍ଦଳ । ଦଳେ ମୋରାରଜୀ ଦେଶାଇଙ୍କୁ ସମର୍ଥନ କଲାବେଳେ ଅନ୍ୟ ଦଳ ଇନ୍ଦିରା ଗାନ୍ଧିଙ୍କୁ ସମର୍ଥନ କଲେ । ତେଣୁ ଦଳୀୟ ପ୍ରାର୍ଥୀ ଭାବରେ ନୀଲମ ସଂଜୀବ ରେଡ୍ଡୀଙ୍କୁ ପ୍ରାର୍ଥୀ କରାଗଲା । ଏଥିପାଇଁ ରେଡ୍ଡୀ ୧୯୬୭ ଜୁଲାଇ ୧୯ ତାରିଖରେ ଲୋକସଭାର ବାଚସ୍ପତି ପଦରୁ ଇସ୍ତଫା ଦେଲେ । ଏବଂ ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀପତ୍ର ଦାଖଲ କଲେ । ମାତ୍ର ଇନ୍ଦିରା ଗାନ୍ଧିଙ୍କ ବିରୋଧ ଯୋଗୁ ସେ ଏଥିରେ ହାରିଗଲେ । ସେହି ଦିନଠାରୁ ସେ ତାଙ୍କର ପ୍ରିୟ ଦଳ କଂଗ୍ରେସର ବିରୋଧୀ ହୋଇ ଉଠିଲେ । ୧୯୭୭ ନିର୍ବାଚନରେ ଜନତା ସରକାର ସଂଖ୍ୟାଗରିଷ୍ଠତା ପାଇବା ପରେ ମୋରାରଜୀ ମନ୍ତ୍ରିମଣ୍ଡଳ ଗଠନ କଲେ । ସେହି ସମୟରେ ସର୍ବସମ୍ମତି କ୍ରମେ ମାର୍ଚ୍ଚ ୨୬ ତାରିଖରେ ରେଡ୍ଡୀ ହେଲେ ଲୋଭସଭାର ବାଚସ୍ପତି । ମୋରାରଜୀଙ୍କ ମନରେ ପୂର୍ବ ରାଗ ଗୁମରୀ ଉଠୁଥାଏ । ୧୯୭୨ରେ ପୁଣି ରାଷ୍ଟ୍ରପତି ନିର୍ବାଚନ ପାଖେଇ ଆସିଲା । ମୋରାରଜୀ ପୁନର୍ବାର ରେଡ୍ଡୀଙ୍କ ନାଁ ଉପସ୍ଥାପନା କଲେ । ଫଳରେ ସେହିବର୍ଷ ଜୁଲାଇ ୧୩ ତାରିଖରେ ପୁଣି ବାଚସ୍ପତି ପଦରୁ ଇସ୍ତଫା ଦେଇ ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀପତ୍ର ଦାଖଲ କଲେ ।

ଜନତାଦଳ ଓ ସବୁ ବିରୋଧିଦଳର ପୂର୍ଣ୍ଣ ସମର୍ଥନ ପାଇ ସର୍ବସମ୍ମତି କ୍ରମେ ପ୍ରାର୍ଥୀ ଭାବେ ୧୯୭୭ ଜୁଲାଇ ୨୧ ତାରିଖରେ ଭାରତର ରାଷ୍ଟ୍ରପତି ଭାବରେ ନୀଲମ ସଂଜୀବ ରେଡ୍ଡୀ ନିର୍ବାଚିତ ହେଲେ । ଭାରତ ସ୍ୱାଧୀନତା ହେବାପରେ ଏପରି ସର୍ବସମ୍ମତ ପ୍ରାର୍ଥୀ ଭାବରେ କେହି ରାଷ୍ଟ୍ରପତି ହୋଇନଥିଲେ । ସେ ରାଷ୍ଟ୍ରପତି ହେବାପରେ ଦଳୀୟ ରାଗକୁ କାହାରି ଉପରେ ଜୋର୍ କରି ଲଦି ଦେଇ ନଥିଲେ । ବରଂ ଦେଶ ଜାତିର ଉନ୍ନତି ପାଇଁ ସେ ନିରପେକ୍ଷ ଭାବରେ କାର୍ଯ୍ୟ ସଂପାଦନା କରିଥିଲେ । ୧୯୮୨ ଜୁଲାଇ ୨୫ ତାରିଖରେ ତାଙ୍କର କାର୍ଯ୍ୟକାଳ ପୂରିଯିବା ପରେ ସେ ଅବସର ନେଇ ନିଜ ଗାଁକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ସେଠାରେ ନିରୀହ କୃଷକମାନଙ୍କ ମେଳରେ ରହି କୃଷି କାର୍ଯ୍ୟରେ ବାକି ଜୀବନ କଟାଇଦେବାର ନିଷ୍ପତ୍ତି ନେଇ ତାଙ୍କ ସହାନୁଭବତାର ପରିଚୟ ଦେଇଥିଲେ ।





# ଜ୍ଞାନୀ ଜୈଲସିଂହ

## ( କାର୍ଯ୍ୟକାଳ - ୧୯୮୨ ଜୁଲାଇ ୨୫ - ୧୯୮୭ ଜୁଲାଇ ୨୫)

ଭାରତ ସେତେବେଳକୁ ଇଂରେଜମାନଙ୍କ ଦ୍ୱାରା ଶାସିତ ହୋଇଥାଏ । ସାରା ଭାରତ ବର୍ଷରେ ଇଂରେଜ ବିରୋଧୀ ହାୱା ଖୁବ୍ ଜୋର୍‌ରେ ମୁଣ୍ଡ ଟେକି ଉଠିଥାଏ । ପଞ୍ଜାବୀମାନେ ଜୀବନଠାରୁ ଦେଶକୁ ଅଧିକ ଭଲ ପାଉଥିଲେ । ଦେଶ ପାଇଁ ହସି ହସି ଜୀବନ ଦେଉଥିଲେ । ସେତିକିବେଳେ ପଞ୍ଜାବରେ ଶିଖ୍ ଧର୍ମ ଓ ଗୁରୁଦ୍ୱାର ସଂସ୍କାର କାର୍ଯ୍ୟକ୍ରମ ଜୋର୍‌ଦାର ଚାଲିଥାଏ । ସେହି କାର୍ଯ୍ୟକ୍ରମରେ ପଞ୍ଜାବର ୧୫ ବର୍ଷର ବାଳକ ମନପ୍ରାଣ ଢାଳି ଦେଇଥାଏ । ଗାଁକୁ ଗାଁ ବୁଲି ଗୁରୁଦ୍ୱାର ଓ ଶିଖ୍‌ମାନଙ୍କ ଧର୍ମ ବିଷୟରେ ଲୋକଙ୍କୁ ବୁଝାଉଥାନ୍ତି ଏବଂ ଶିଖ୍ ଧର୍ମର ସଂସ୍କାର ଆଣିବାକୁ ଭଜନ କୀର୍ତ୍ତନ କରୁଥାନ୍ତି । ରାଜନୀତି ତାଙ୍କଠାରୁ ବହୁ ଦୂରରେ ଥାଏ ।

ସେତିକିବେଳେ ଦେଶ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ଶହିଦ ଭଗତ ସିଂ ଫାଶୀ ପାଇଥାନ୍ତି । ଭଗତ ସିଂଙ୍କ ଫାଶୀ ସମ୍ବାଦ ପାଇବା ପରେ ତମାମ୍ ପଞ୍ଜାବରେ ସ୍ୱାଧୀନତା ସଂଗ୍ରାମର ଅଗ୍ନି ପ୍ରଜ୍ୱଳିତ ହୋଇ ଉଠିଲା । ଭଗତ ସିଂଙ୍କ ସହ ଅନ୍ୟ ଦୁଇଜଣ ଶିଖ୍ ଯୁବକ ଫାଶୀ ପାଇଥାନ୍ତି । ଏକଥା ଜାଣିବାପରେ ସେଇ ୧୫ ବର୍ଷର ପତଳା ଶିଖ୍ ଯୁବକର ରକ୍ତ ତାତି ଉଠିଲା । ଦେଶ ମାତୃକା ପାଇଁ ଶହୀଦ ହେବାଠାରୁ ବଡ଼ ଏ ଦୁନିଆଁରେ ଅନ୍ୟକିଛି ନାହିଁ । ଘରେ ଚାହିଁଥିଲେ ପିଲାଟି ଶିଖ୍ ଧର୍ମର ଗୁରୁ ହେଉ । ହେଲେ ସେଇଦିନରୁ ଶିଖ୍ ଯୁବକର ଚିନ୍ତାଧାରାରେ ପରିବର୍ତ୍ତନ ଦେଖାଦେଲା । ଦେଶ ମାତୃକାର ସେବା କରିବା ପାଇଁ ସେ ଶପଥ ନେଲା । ସେଥିପାଇଁ ଯଦି ତାକୁ ଶହୀଦ ହେବାକୁ ପଡ଼େ ତଥାପି ତାର

ଭୟ କିମ୍ବା ଶୋଚନା ନାହିଁ । ପାଠଠାରୁ ଦେଶର କଥା ତାର ମନରେ ଅଧିକରୁ ଅଧିକ ମାତ୍ରାରେ ଆନ୍ଦୋଳିତ କରିବାକୁ ଲାଗିଲା । ଏପରି ବି ଦେଶ ମାତୃକାର ସ୍ୱାଧୀନତା ପାଇଁ ସେ ସ୍ୱାଧୀନତା ଆନ୍ଦୋଳନରେ ନିଜକୁ ସାମିଲ କରିଦେଲେ । ଗାଁ ଗାଁ ବୁଲି ଶହୀଦମାନଙ୍କ ବିଷୟରେ ଆଲୋଚନା କରି ପଞ୍ଜାବ ବାସୀଙ୍କ ମନରେ ଦେଶପ୍ରୀତି ଜାଗ୍ରତ କଲେ । ସେ ଶିଖ୍ ଯୁବକ ଜଣଙ୍କ ଅନ୍ୟ କେହି ନୁହଁନ୍ତି, ସେ ହେଲେ ଭାରତର ପୂର୍ବତନ ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହ ।

ପଞ୍ଜାବର ଦିଲ୍ଲୀ ଭିତିଣ୍ଡା ଫିରୋଜପୁର ରେଲଲାଇନ କଡ଼ରେ ଛୋଟିଆ ଗାଁଟିଏ । ନାଁ ତାର ସିନ୍ଧିୱାନ । ଫରିଦ୍ କୋଟ ଠାରୁ ଏହା ୧୦ ମାଇଲ ଦୂରରେ ଅବସ୍ଥିତ । ସେ ଗ୍ରାମରେ କିଷାନ ସିଂ ନାମରେ ଏକ ବିଶ୍ୱକର୍ମା ପରିବାର ରହୁଥିଲେ । କିଷାନ ସିଂହର ତିନୋଟି ପୁଅ ଓ ଗୋଟିଏ ଝିଅ ଥିଲେ । ଶେଷ ସନ୍ତାନଟି ୧୯୧୬ ମସିହା ମେ ମାସ ୫ ତାରିଖରେ ଜନ୍ମ ନେଇଥିଲେ । ଝିଅ ପରେ ପୁଅ ହେବାର ଖବର ଶୁଣି ଘର ଲୋକମାନେ ଭାରି ଖୁସି ହୋଇଗଲେ । ସେ ପିଲାଟି ଦିନେ ସାରା ଭାରତର ନାଁ ରଖିବ ଏକଥା ପିଲାଟି ଦିନରୁ ଜଣା ପଡ଼ିଥିଲା । ସାନପୁଅ ହେତୁ ସମସ୍ତେ ତାକୁ ଆଦର କଲେ ଓ ସ୍ନେହରେ ତାଙ୍କ ନାଁ ରଖିଲେ ଜୈଲ ସିଂହ । ମା' ଇନ୍ଦ୍ କାଉରଙ୍କ ମନରେ ଭାରି ଇଚ୍ଛା ପୁଅଟିକୁ ବଡ଼ ମଣିଷ କରିବେ, ହେଲେ ତାଙ୍କ ଇଚ୍ଛା ଇଚ୍ଛାରେ କେବଳ ରହିଗଲା । ଜୈଲଙ୍କୁ ମାତ୍ର ଦେଢ଼ ବର୍ଷ ହୋଇଥିବା ବେଳେ ତାଙ୍କ ମା' ତାଙ୍କୁ ଛାଡ଼ି ଚାଲିଗଲେ । ହେଲେ ତାଙ୍କର ମାଉସୀ ବବି ଦୟା କାଉରଙ୍କ ସ୍ନେହ ଆଦରରେ ଜୈଲ ସିଂହ ବାରବର୍ଷର ହେବାଯାଏ ଜାଣିପାରି ନଥିଲେ ତାଙ୍କ ମା' କିଏ ?

ଶିଖ୍ ଧର୍ମ ପ୍ରତି କିଷାନ ସିଂହଙ୍କର ଥିଲା ପ୍ରବଳ ଦୁର୍ବଳତା । ତାଙ୍କ ପରିବାରର ମଥାନରେ ଶିଖ୍ ଧର୍ମର ପତାକା ଉଠୁଥିଲା । ଜୈଲ ସିଂହ ସିନା ପିଲା ଦିନରୁ ପଇସା ଅଭାବରୁ ବେଶୀ ପାଠ ପଢ଼ି ପାରିନଥିଲେ, ହେଲେ ପ୍ରତିଦିନ ଶିଖ୍ଧର୍ମ ମନ୍ତ୍ର ପଢ଼ିଲେ ତାରି ଫଳରେ ସେ ହୋଇପାରିଲେ ଅଗାଧ ଜ୍ଞାନର ଅଧିକାରୀ । ଦିନ ଆସିଲା ଶିଖ୍ ଧର୍ମ ଉପରେ ତାଙ୍କର ଏପରି ଜ୍ଞାନ ଉଦୟ ହେଲା । ପରବର୍ତ୍ତୀ କାଳରେ ସେ ଜ୍ଞାନୀ ଜୈଲ ସିଂହ ନାମରେ ପରିଚିତ ହୋଇ ଉଠିଲେ । ମାତ୍ର ୫ ବର୍ଷ ବୟସରୁ ସେ ଗୁରୁ ମନ୍ତ୍ରୀ ସାହେବଙ୍କୁ ପଢ଼ି ବୁଝି ପାରୁଥିଲେ । ସ୍କୁଲ ନ ଜାଇ ଘରେ ବସି ବିଭିନ୍ନ ଭାଷାରେ ସେ ଶିକ୍ଷାଲାଭ କଲେ ।

ଜ୍ଞାନୀଙ୍କୁ ୧୨ ବର୍ଷ ହୋଇଥିବା ବେଳେ ତାଙ୍କୁ ବସନ୍ତ ହେଲା । ତାଙ୍କ ଅବସ୍ଥା ଗୁରୁତର ହୋଇଗଲା । କିଛି ଔଷଧ କାମ କଲାନି । କ'ଣ କରିବେ କିଷାନ ସିଂହ ।

ଶେଷରେ ଠାକୁରଙ୍କୁ ପ୍ରାର୍ଥନା କରି କହିଲେ, ''ହେ ପ୍ରଭୁ ! ତୁମେ ଯଦି ମୋ ପୁଅକୁ ବଞ୍ଚାଇଦେବ, ତେବେ ତାକୁ ତୁମରି ସେବାରେ ବିନିଯୋଗ କରିବି । ଅନ୍ୟ କୌଣସି କାମ ନ କରି ସେ କେବଳ ତୁମର ମହିମା ପ୍ରଚାର କରିବ ।'' ତାହାହିଁ ହେଲା । ଠାକୁର ତାଙ୍କ ଶୁଣିଲେ । ଜ୍ଞାନୀ ଖୁବ୍‌ଶୀଘ୍ର ଭଲ ହୋଇ ବସିଲେ ଓ ଶିଖଧର୍ମର ଗୁଣ କୀର୍ତ୍ତନ କରିବାକୁ ଲାଗିଲେ ।

ସେ କୀର୍ତ୍ତନ କରିବା ଭିତରେ ସଂଗ୍ରାମୀମାନଙ୍କ ସହ ମିଶିଲେ । ବାପାଙ୍କ ପରାମର୍ଶରେ ଦେଶ ସେବା କରିବାକୁ ଅଣ୍ଟା ସଳଖି ନେଲେ । ଏତିକିବେଳେ ତାଙ୍କୁ ବଦି ପ୍ରଧାନ କାଉର ସହିତ ବିବାହ କରାଇଦେଲେ । ଜ୍ଞାନୀ ବିନା ଇଉତୁକରେ ବିବାହ କରିଥିଲେ । ଠିକ୍ ସେ ବର୍ଷ ''ମୋ ଧର୍ମକୁ ମୁଁ କାହିଁକି ଭଲ ପାଏ'' ଏକ ଧର୍ମ ସଭାରେ ଅଭିଭାଷଣ ଦେଇ ସାରା ଭାରତରେ ପ୍ରିୟପାତ୍ର ହୋଇ ଉଠିଲେ ।

୧୯୩୮ରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲେ, ସେତିକିବେଳେ ଫରିଦ୍‌କୋର୍ଟରେ ରାଜା-ରାଜୁଡ଼ା ଶାସନ ପ୍ରଚଳନ ହୋଇଥାଏ । ରାଜାମାନେ ଇଂରେଜ ସରକାରଙ୍କ ଦୟାରେ ରାଜ୍ୟ ଶାସନ କରି ପ୍ରଜାମାନଙ୍କୁ ବିଭିନ୍ନ ପ୍ରକାର ନିର୍ଯ୍ୟାତନା ଦେଉଥିଲେ । ଯିଏ, ପ୍ରତିବାଦ କରୁଥିଲା ତାକୁ ଜେଲ ସହ ଜୋରିମାନା ଦେବାକୁ ପଡୁଥିଲା । ଜ୍ଞାନଜୀ ଫରିଦକୋର୍ଟରେ ପ୍ରଥମେ ଭାରତୀୟ ଜାତୀୟ କଂଗ୍ରେସର ଜିଲ୍ଲା ଶାଖାଟିଏ ଖୋଲିଲେ । ସେ ବିଭିନ୍ନ ସ୍ଥାନରେ ସଭା ସମିତି କରି ଇଂରେଜ ସରକାର ଓ ରାଜାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଫଳରେ ଜ୍ଞାନଜୀଙ୍କୁ ଗିରଫ କରାଯାଇ ପାଞ୍ଚ ବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା ଏବଂ ୨୫୦ ଟଙ୍କା ଜୋରିମାନା ଦେବାକୁ ହୋଇଥିଲା । ଜେଲ ଭିତରେ ମଧ୍ୟ ସେ ବିଭିନ୍ନ ଧର୍ମ ପୁସ୍ତକ ପଢୁଥିଲେ । ଏବଂ ସେଇ ଜେଲରେ ସେ ଇଂରାଜୀ ଭାଷା ପଢ଼ିବାକୁ ଆରମ୍ଭ କଲେ । ଜେଲରେ ଥିବାବେଳେ ତାଙ୍କ ପାଳିତ ମା' ତାକୁ ଛାଡ଼ି ଇହଲୀଳା ସମ୍ବରଣ କଲେ । ଜେଲରୁ ମୁକୁଳି ଦୁଃଖରେ ଭାଙ୍ଗିପଡ଼ିଲେ । ଜେଲରୁ ସିନା ମୁକ୍ତି ପାଇଲେ ହେଲେ ସରକାରଙ୍କର ତାଙ୍କ ଉପରେ ଥାଏ କଡ଼ା ନଜର । ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା ସବୁ କିଛିକୁ ଓଲଟ ପାଲଟ କରି ପକାଇଥାଏ । ତେଣୁ ଜ୍ଞାନୀଙ୍କ ପଛରେ ପୋଲିସ ଛାଇପରି ଲାଗିଥାନ୍ତି । ତଥାପି ଜ୍ଞାନୀଜୀ ସ୍ଥିର କଲେ ରାଜ୍ୟ ବାହାରେ ଥାଇ ଏ ଆନ୍ଦୋଳନକୁ ଜୋର୍‌ଦାର ଚଳାଇବେ । ଏଥିପାଇଁ ସେ ଗାଁ ଛାଡ଼ି ଲାହୋର ପଳାଇଲେ । ସେଠାରେ ସେ ତାରା ସିଂହଙ୍କ ସାହାଯ୍ୟରେ ଅମୃତସର ଶିଖ୍ ମିଶନାରୀ କଲେଜରେ ମାସିକ ୧୬ ଟଙ୍କା ବେତନରେ ଯୋଗଦେଲେ । ପରେ ଅବଶ୍ୟ ମାସିକ ୮୧ ଟଙ୍କା ବେତନ ପାଉଥିଲେ ।

ଫରିଦକୋର୍ଟ ରାଜାଙ୍କ ଦୌରାତ୍ମ୍ୟ ଦିନକୁ ଦିନ ବଢ଼ି ଚାଲିଥାଏ । ଏହାର ପ୍ରତିବାଦରେ ସେଠାରେ କଂଗ୍ରେସ ପକ୍ଷରୁ ଗୋଟିଏ ବଡ଼ଧରଣର ସଭା କଲେ । ଏଥିରେ ନେହେରୁ ଯୋଗ ଦେଇଥିଲେ । ସେଠାରୁ ହିଁ ଜ୍ଞାନୀଜୀଙ୍କ ସହ ନେହେରୁଙ୍କର ଘନିଷ୍ଠତା ବଢ଼ିଥିଲା । ଦେଶ ସ୍ୱାଧୀନ ହେଲା । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ହେଲେ ଦେଶର ଗୃହମନ୍ତ୍ରୀ, ତାଙ୍କରି ନେତୃତ୍ୱରେ ଦେଶୀୟ ରାଜ୍ୟର ମିଶ୍ରଣ ଆରମ୍ଭ ହେଲା । ଏଥିପାଇଁ ଜ୍ଞାନୀଜୀଙ୍କୁ ଦିଲ୍ଲୀ ଆମନ୍ତ୍ରଣ କରିଥିଲେ । ସେ ବିନା ପଇସାରେ ଦିଲ୍ଲୀ ଯାଇଥିଲେ, ମାତ୍ର ୧୦ ମିନିଟ୍ ଡେରି ହୋଇଯିବାରୁ ତାଙ୍କୁ ୫୦ ଦିନ ଅପେକ୍ଷା କରିବାକୁ ପଡିଥିଲା ।

ସମୟ ଆସିଲା, ସର୍ଦ୍ଦାର ଜ୍ଞାନସିଂହ ନିର୍ଦ୍ଦେଶରେ ମନ୍ତ୍ରିମଣ୍ଡଳ ଗଠିତ ହେଲା । ତାଙ୍କ ମନ୍ତ୍ରିମଣ୍ଡଳରେ ଜ୍ଞାନଜୀ ହେଲେ ରାଜସ୍ୱମନ୍ତ୍ରୀ । ୧୯୪୮ରୁ ୧୯୪୯ ପର୍ଯ୍ୟନ୍ତ ସେ ରାଜସ୍ୱମନ୍ତ୍ରୀ ଭାବରେ ଦାୟିତ୍ୱ ତୁଲାଇ ଥିଲେ । ୧୯୫୧ରୁ ୧୯୫୨ରେ ସେ କୃଷି ଓ ନିର୍ମାଣ ବିଭାଗର ମନ୍ତ୍ରୀ ହେଲେ । ଏହି ସମୟରେ ରାଜ୍ୟରେ ଅଧିକ ଶସ୍ୟ ଅମଳାଧ ଯୋଜନାକୁ କାର୍ଯ୍ୟକାରୀ କରାଇଥିଲେ । ୧୯୫୪ରୁ ୧୯୫୬ ପରେ ଦୁଇ ବର୍ଷ ପାଇଁ ପେପସୁ ପ୍ରଦେଶର କଂଗ୍ରେସ କମିଟି ସଭାପତି ଭାବରେ ନିର୍ବାଚିତ ହେଲେ । ତାଙ୍କରୀ ସଭାପତିତ୍ୱରେ କଂଗ୍ରେସର ବିପୁଳ ବିଜୟ ହୋଇଥିଲା । ୧୯୫୬ରୁ ଜ୍ଞାନୀ ଜୈଲ ସିଂହ ରାଜ୍ୟସଭା ସଦସ୍ୟ ଭାବରେ ନିର୍ବାଚିତ ହୋଇ ଦୀର୍ଘ ଛଅବର୍ଷ; କାଳ ରହିଥିଲେ । ପରେ ସେ ପଞ୍ଜାବ ପ୍ରଦେଶ କଂଗ୍ରେସ କମିଟିର ଉପସଭାପତି ରହିଲେ ।

୧୯୬୨ରେ ସେ ପୁନରାଏ ପଞ୍ଜାବ ମହାରାଣୀଙ୍କ ବିରୁଦ୍ଧରେ ପ୍ରତିଯୋଗିତା କରି ବିପୁଳ ସଂଖ୍ୟକ ଭୋଟରେ ବିଜୟୀ ହୋଇ ପଞ୍ଜାବ ବିଧାନସଭାକୁ ଫେରି ଆସିଲେ ।

୧୯୭୨ରେ ପଞ୍ଜାବ ବିଧାନସଭାକୁ ନିର୍ବାଚିତ ହୋଇ କଂଗ୍ରେସ ବିଧାୟକ ଦଳର ନେତା ଭାବରେ ପଞ୍ଜାବର ମୁଖ୍ୟମନ୍ତ୍ରୀ ହୋଇଥିଲେ । ୧୯୭୨ ରୁ ୧୯୭୭ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ପଦରେ ରହି ରାଜ୍ୟରୁ ବେକାରୀ ଦୂରୀକରଣ ପାଇଁ ବହୁବିଧ ଯୋଜନା ମାନ କାର୍ଯ୍ୟକାରୀ କରିଥିଲେ ।

୧୯୮୦ରେ ସପ୍ତମ ଲୋକସଭା ନିର୍ବାଚନରେ ସେ କଂଗ୍ରେସ ତରଫରୁ ନିର୍ବାଚିତ ହୋଇ ଇନ୍ଦିରା ମନ୍ତ୍ରିମଣ୍ଡଳରେ କେନ୍ଦ୍ର ଘରୋଇ ମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କଲେ ।

ତାଙ୍କ ସମୟରେ ପଞ୍ଜାବ ଓ ଆସାମର ଅଶାନ୍ତି ଲାଗି ରହିଥିଲା । ହେଲେ ଆସାମ ସମସ୍ୟା ସମାଧାନ କରିବା ପାଇଁ ତାଙ୍କର ଅବଦାନ ଥିଲା ଯଥେଷ୍ଟ ଏବଂ ପଞ୍ଜାବ ସମସ୍ୟାକୁ ଦମନ କରିବା ପାଇଁ ଅନେକ ପଦକ୍ଷେପ ନେଇଥିଲେ ।

ଜ୍ଞାନଜୀ ରାଜନୈତିକ ଜୀବନ ଆରମ୍ଭ କଲାବେଳକୁ ଏକ ସମ୍ବାଦପତ୍ର ପ୍ରକାଶ

କରିବା ପାଇଁ ମନ ବଳାଇଥିଲେ ଏବଂ ଶେଷରେ 'ଖାଉଡ଼ା ସେବକ' ନାମରେ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶ କରିଥିଲେ । ଏହା ଅବଶ୍ୟ ପରେ ଦୈନିକ ହୋଇ କେତେକ କାରଣବଶତଃ ବନ୍ଦ ହୋଇ ଯାଇଥିଲା ।

୧୯୮୨ ଜୁନ୍ ୨୦ ତାରିଖରେ ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥିପତ୍ର ମନୋନୟନ କରାଗଲା । ଇନ୍ଦିରା ଗାନ୍ଧିଙ୍କ ପ୍ରେରଣାରେ ସେ କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇ ବିଭାଜିତ କଂଗ୍ରେସ(ଇ) ପକ୍ଷରୁ ରାଷ୍ଟ୍ରପତି ପାଇଁ ପ୍ରାର୍ଥୀ ହୋଇ ମନୋନୟନ ପତ୍ର ଦାଖଲ କଲେ । ସେହି ବର୍ଷ ଜୁଲାଇ ୧୨ ତାରିଖରେ ନିର୍ବାଚନ ହେଲା । ଏବଂ ଜ୍ଞାନୀ ଜୈଲ ସିଂହ ସିଧାସଳଖ ପ୍ରତିଦ୍ୱନ୍ଦ୍ୱିତାରେ ଜଷ୍ଟିସ ଏଚ.ଆର. ଖାନ୍ନାଙ୍କଠାରୁ ୪,୭୧,୪୨୮ଟି ଭୋଟ ପାଇ ବିଜୟୀ ହେଲେ । ସେ ଭାରତର ସପ୍ତମ ରାଷ୍ଟ୍ରପତି ଭାବରେ ନିର୍ବାଚିତ ହେଲେ ଓ ସେହି ମାସ ୨୪ ତାରିଖରେ ଭାରତର ରାଷ୍ଟ୍ରପତି ଭାବରେ ଦାୟିତ୍ୱ ଗ୍ରହଣ କଲେ ।

ରାଷ୍ଟ୍ରପତି ହେବା ପରେ ସେ କହିଥିଲେ, ''କେବଳ ମୋ ପ୍ରଦେଶ ପଞ୍ଜାବ ନୁହେଁ, ମୋ ପ୍ରିୟ ଜନ୍ମଭୂମିର ସୁରକ୍ଷା ମୋ ଆଗରେ ।'' ଦେଶ କଥା ପଡ଼ିଲେ ଜ୍ଞାନିଜୀ ନିଜ ପରିବାରକୁ ମଧ ପଛକୁ ପକାଇ ଦିଅନ୍ତି । ମୁଖ୍ୟମନ୍ତ୍ରୀ ସମୟରେ ଗୋଟିଏ ପୁଅ ଓ ତିନୋଟି ଝିଅର ଦାଇତ୍ୱକୁ ସ୍ତ୍ରୀ ପ୍ରଧାନ କାଉରଙ୍କ ଉପରେ ନ୍ୟସ୍ତ କରି ବାହାରେ ରହୁଥିଲେ ।

ଜ୍ଞାନିଜୀ ଅନେକ କବିତା ଲେଖୁଥିଲେ । ଇଂରେଜ ସରକାର ତାଙ୍କ ଘର ଖାନତଲାସ କଲାବେଳେ ସେ ସବୁ କେଉଁଆଡ଼େ ନଷ୍ଟ ହୋଇ ଯାଇଥିଲା । ପରବର୍ତ୍ତୀ ସମୟରେ ଶିଖ୍ ଧର୍ମ ଉପରେ ଅନେକ ଇତିହାସ ଲେଖିଥିଲେ, ସେଥିପାଇଁ ପଞ୍ଜାବୀ ବିଶ୍ୱବିଦ୍ୟାଳୟ ତାଙ୍କୁ ଆଇନରେ ଡକ୍ଟରେଟ ଡିଗ୍ରୀ ପ୍ରଦାନ କରିଥିଲେ ।

ପଞ୍ଜାବ ଅମୃତସରରେ ଯେଉଁ ପବିତ୍ର ସ୍ୱର୍ଣ୍ଣ ମନ୍ଦିର ଅଛି, ତାହା ଅନେକ ଦିନ ଧରି ସନ୍ତ୍ରାସବାଦୀଙ୍କ ଆଡ୍ଡାସ୍ଥଳୀ ହୋଇ ରହିଥିଲା । ବହୁ ଚର୍ଚ୍ଚିତ ବ୍ଲୁଷ୍ଟାର ଅପରେସନ କରାଯାଇଥିଲା, ସେ ଘଟଣା ସର୍ବସାଧାରଣରେ ବିଶଦ ଭାବରେ ଆଲୋଚନାର ବିଷୟବସ୍ତୁ ହୋଇଥିଲା । ବ୍ଲୁଷ୍ଟାର ଅପରେସନ ପାଇଁ ପଞ୍ଜାବର ସମସ୍ୟା ସମାଧାନ ନ ହୋଇ ବରଂ ବେଶୀ ଅଶାନ୍ତି ସୃଷ୍ଟି ହୋଇଥିଲା । ଫଳରେ ନିଜର ଦେହରକ୍ଷୀ ବେଓନ୍ତ ସିଂହ ଓ ମନ୍ନୁସ୍ୱାନ୍ତ ସିଂହଙ୍କ ଗୁଳିରେ ଇନ୍ଦିରା ଶହୀଦ ହୋଇଥିଲେ । ଇନ୍ଦିରାଙ୍କ ଦେହାନ୍ତ ପରେ ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହଙ୍କ ପ୍ରଚ୍ଛନ୍ନ ସହଯୋଗିତାରେ ରାଜୀବ ଗାନ୍ଧି ହେଲେ ଭାରତର ପରବର୍ତ୍ତୀ ପ୍ରଧାନମନ୍ତ୍ରୀ । ତେବେ ଇନ୍ଦିରା ଓ ରାଜୀବ ଗାନ୍ଧିଙ୍କ ସହ ଜ୍ଞାନିଜୀଙ୍କ ବ୍ୟକ୍ତିଗତ ସଂପର୍କ ତାଙ୍କୁ ଉତ୍ସାହ ପ୍ରଦାନ କରିଥିଲା ।

୧୯୮୭ ମସିହା ଜୁଲାଇ ୨୫ ତାରିଖରେ ଜ୍ଞାନିଜୀ ରାଷ୍ଟ୍ରପତି ପଦରୁ ଅବସର ନେଲେ । ମାତ୍ର ସେ ଦିଲ୍ଲୀର ନହିଁ ଆନନ୍ଦପୁର ଭବନରେ ନିରାଡ଼ମ୍ବର ପରିବେଶରେ ରହିଲେ ।

୧୯୯୪ ମସିହା ନଭେମ୍ବର ୨୯ ତାରିଖରେ ଜ୍ଞାନିଜୀ ଗୋଟିଏ କାର୍‌ରେ ଆନନ୍ଦପୁର ସାହିବରୁ ଚଣ୍ଡୀଗଡ଼କୁ ଯାଇଥିଲେ, ହଠାତ୍ ରେହତ୍ ଜିଲ୍ଲାର କୁପା ସାହିବ ନିକଟରେ ଟ୍ରକ ସହ ତାଙ୍କର କାର୍‌ଟି ଧକ୍କା ହେବା ଫଳରେ ଗୁରୁତର ଆଘାତ ହୋଇଗଲେ । ସେଦିନ ଡିସେମ୍ବର ୧୪ ତାରିଖ, ତାଙ୍କର ଅବସ୍ଥା କ୍ରମେ ସଂକଟାପନ୍ନ ହୋଇପଡ଼ିଲା । ପରେ ତାଙ୍କର ଶରୀରରେ ଅସ୍ତ୍ରୋପଚାର କରାଗଲା । ମାତ୍ର ସେ କାମଳ ଓ ମୂତ୍ରାଶୟ ରୋଗରେ ପୀଡ଼ିତ ହୋଇଗଲେ । ଚଣ୍ଡୀଗଡ଼ସ୍ଥିତ ପିଡ଼ିଧାଇର ନେହେରୁ ହାସପାତାଲ ସୁପରିଟେଣ୍ଡେଣ୍ଟ ଭି.କେ. କାକଙ୍କ ଅଧକ୍ଷତାରେ ଏକ ଚିକିତ୍ସକ ଦଳ ପ୍ରାଣମୂର୍ଚ୍ଛା ଉଦ୍ୟମ କରିଥିଲେ । ହେଲେ ମୃତ୍ୟୁ ସହିତ ଦୀର୍ଘ ୨୨ ଦିନ ସଂଗ୍ରାମ କରିବା ପରେ ୧୯୯୪ ଡିସେମ୍ବର ୨୫ ତାରିଖ ସକାଳ ସାତଟା ଚାଳିଶ ମିନିଟରେ ଜ୍ଞାନିଜୀ ଶେଷ ନିଶ୍ୱାସ ତ୍ୟାଗ କଲେ । ମୃତ୍ୟୁ ବେଳକୁ ତାଙ୍କୁ ୭୮ ବର୍ଷ ହୋଇଥିଲା । ଭାରତ ଭୂଇଁରୁ ପ୍ରିୟ ଜ୍ଞାନିଜୀ ସବୁଦିନ ପାଇଁ ଚିର ବିଦାୟ ନେଲେ ।

ପରଦିନ ତାଙ୍କ ମରଶରୀରକୁ ନୂଆଦିଲ୍ଲୀର ବିଜୟଘାଟ ନିକଟରେ ଥିବା ଏକତା ସ୍ଥାନରେ ରାଷ୍ଟ୍ରୀୟ ସମ୍ମାନର ସହିତ ଦାହ କରାଗଲା । ପୁଅ ଯୋଗୀଲ ସିଂହ ମୁଖାଗ୍ନି ଦେବାପରେ ତାଙ୍କର ପ୍ରାର୍ଥିବ ଶରୀରଟା ନିଆଁରେ ପୋଡ଼ି ପାଉଁଶ ହୋଇଗଲା । ହେଲେ ଚାରିଆଡ଼େ ଜୈଲ ସିଂହ ଅମର ରହେ ବାଣୀରେ ମୁଖରିତ ହୋଇ ଉଠିଲା । ଭାରତ ତାର ପ୍ରୀୟ ସନ୍ତାନକୁ ହରାଇ ଦୁଃଖରେ ଭାଙ୍ଗି ପଡ଼ିଲା ।







# ରାମସ୍ୱାମୀ ଭେଙ୍କଟରମଣ

## (କାର୍ଯ୍ୟକାଳ - ୧୯୮୭ ଜୁଲାଇ ୨୫ - ୧୯୮୧ ଜୁଲାଇ ୨୫)

୧୯୨୩ ମସିହାର କଥା । ସାରା ଦେଶରେ ଇଂରେଜ ସରକାରଙ୍କ ରାଜତ୍ୱ ବିରୋଧରେ ଜୋର୍‌ଦାର ବିପ୍ଳବ ମୁଣ୍ଡ ଟେକି ଉଠିଥାଏ । ଭାରତକୁ ସ୍ୱାଧୀନତା ଦେବାକୁ ଭାରତର ଅନେକ ମହାମନିଷୀମାନେ ଖୋଲାଖୋଲି ଭାବରେ ଆହ୍ୱାନ ଦେଉଥାନ୍ତି । ଅନେକ ଭାରତୀୟ ସ୍ୱାର୍ଥବାଦୀମାନେ ଏଥିରେ ଇଂରେଜ ସରକାରଙ୍କୁ ସାହାଯ୍ୟ ଯୋଗାଥାନ୍ତି । ଭାରତର ଗୁରୁତ୍ୱପୂର୍ଣ୍ଣ ତଥ୍ୟମାନ ଇଂରେଜ ସରକାରଙ୍କୁ ଯୋଗାଇ ଦେଇ ସ୍ୱାଧୀନତା ଆନ୍ଦୋଳନକୁ ଭଣ୍ଡୁର କରିବା ପାଇଁ ଚଳାଇଥାନ୍ତି । ସେହି ସମୟରେ ତଞ୍ଜୋର ଜିଲ୍ଲାର ଏକ ହାଇସ୍କୁଲରେ ପଢୁଥାନ୍ତି କଳା ରଙ୍ଗର ପିଲାଟିଏ । ଯିଏକି ପାଠପଢ଼ାକୁ ଖାତର ନ କରି ଦେଶ ସ୍ୱାଧୀନତା ହେବାର ନିଶାରେ ପାଗଳ ହୋଇ ରହିଥାଏ । ସେ ପାଠପଢ଼ା ସରିଲା ପରେ ସଦା ସର୍ବଦା ମଉନ ହୋଇ ବସି କିପରି ଦେଶ ସ୍ୱାଧୀନ ହେବ ଏ ବିଷୟରେ ଚିନ୍ତା କରୁଥାଏ । ଦିନକର କଥା ସ୍କୁଲ ଛୁଟି ପରେ ଘରକୁ ଫେରୁଥାଏ । ଦେଖିଲ, ସ୍କୁଲ ପଛପଟ ଆମ୍ବବାଡ଼ିରେ ଅନେକ ଟୋପି ଖଦଡ଼ ପିନ୍ଧା ଲୋକମାନେ ନୀରବରେ ବସି କ'ଣ ଆଲୋଚନା କରୁଛନ୍ତି । ପିଲାଟି ଚୁପ୍‌ଚାପ୍ ଯାଇ ସେମାନଙ୍କ ଆଲୋଚନା ସବୁ ଶୁଣିଲା । ଅନେକ ସମୟ ପରେ ବୁଝିପାରିଲା ଏଇମାନେ ତେବେ ଆମ ଦେଶକୁ ସ୍ୱାଧୀନତା ଆଣିବାକୁ ସଂଗ୍ରାମ ଚଳାଇଛନ୍ତି । ଇଂରେଜ ସରକାରଙ୍କ ବିରୁଦ୍ଧରେ ଆନ୍ଦୋଳନ ଚଳାଇବାକୁ ଏମାନେ ଗୁପ୍ତରେ ଆଲୋଚନା କରୁଛନ୍ତି । ଭାରି ଖୁସି ଲାଗିଲା, ସେମାନଙ୍କ ଆଲୋଚନା ସବୁ ମୂଳରୁ ଶେଷ ଯାଏ ମନଦେଇ ଶୁଣିଲା ।

ହଠାତ୍ କିଛିଦୂରରେ ଦେଖିଲା ଗୋଟିଏ ଲୋକଟିଏ ଏମାନଙ୍କ ଆଲୋଚନାକୁ ସବୁ ଟିପି ରଖୁଛି । ଚୋରଙ୍କ ପରି କନ କନ ହେଉଛି । ପିଲାଟିର ସନ୍ଦେହ ହେଲା ନିଶ୍ଚିତ ଏଇ ଲୋକଟି ଇଂରେଜମାନଙ୍କୁ ସାହାଯ୍ୟ କରିବା ପାଇଁ ଏ ଆଲୋଚନା ସବୁକୁ ଟିପି ରଖୁଛି । ତେବେ କ'ଣ କରାଯିବ, ଏତେବଡ଼ ଆଲୋଚନା ପଣ୍ଡ ହୋଇଯିବ । ରାତି ପାହିଲେ ତଞ୍ଜୋର ଜିଲ୍ଲା କମିଶନ ଅଫିସ ଘେରାଉ, ଏ ସମ୍ବାଦ ଇଂରେଜମାନେ ପାଇଗଲେ ସବୁ ଭଣ୍ଡୁର ହୋଇଯିବ, କ'ଣ କରାଯିବ ଭାବି ଭାବି ପିଲାଟି କିଛି ଚିନ୍ତା କରିପାରିଲା ନାହିଁ । ପାଖରେ ପଡ଼ିଥିବା ଭଙ୍ଗା ଇଟା ଖଣ୍ଡକୁ ଖୁବ୍ ଜୋର୍‌ରେ ଲକ୍ଷ୍ୟ କରି ସେ ଲୋକଟି ଉପରକୁ ଫିଙ୍ଗି ଦେଲା । ଇଟା ଖଣ୍ଡକ ଲୋକଟିର ଠିକ୍ ମୁଣ୍ଡରେ ବାଜିଲା । ମାଆଲୋ ମରିଗଲି କହି ଲୋକଟି ସେଇଠି ଟଳି ପଡ଼ିଲା । ଚମକି ପଡ଼ିଲେ ଏମାନେ । ଧାଇଁଯାଇ ଦେଖନ୍ତି ଲୋକଟି ଚେତା ହରାଇ ପଡ଼ିଛି । ଲୋକଟିକୁ ଦେଖି ଆଲୋଚନାରତ ଲୋକମାନେ ସବୁ ବିଝିଗଲେ । ଏ ଲୋକଟି ନିଶ୍ଚିତ ଭାବରେ ଆମର ଗୁପ୍ତ ତଥ୍ୟ ମାନ ନେଇ ଗୋରା ଲୋକମାନଙ୍କ ପାଖରେ ପହଞ୍ଚାଉଥାଏ, ତେବେ ଏହାକୁ ଏମିତି ରକ୍ତାକ୍ତ କଲା କିଏ ? ଠିକ୍ ଏତିକିବେଳେ ଗଛ ଆଡୁଆଳରୁ ଛୋଟ ପିଲାଟିଏ ବାହାରି ଆସି କହିଲା ଏ ଲୋକଟି ଆପଣମାନଙ୍କ କଥାକୁ ସବୁ ଲେଖି ରଖୁଥିଲା । ଭାବିଲି ଇଏ ନିଶ୍ଚିତ ଇଂରେଜମାନଙ୍କ ଦୂତ ସେଥିପାଇଁ ଟେକା ପକାଇ ରକ୍ତାକ୍ତ କରିଦେଲି । ଆଶ୍ଚର୍ଯ୍ୟ ହୋଇଗଲେ, ଆଲୋଚନା ରତ ଲୋକମାନେ ଆଉ କହିଲେ ଦେଖିବ ପିଲାଟି ନିଶ୍ଚିତ ଦିନେ ବଡ଼ ହେବ । ତାହାହିଁ ହେଲା ସେ ପିଲାଟି ଦିନେ ଭାରତର ରାଷ୍ଟ୍ରପତି ହେଲେ । ସେ ହେଲେ ଭାରତର ପୂର୍ବତନ ରାଷ୍ଟ୍ରପତି ଆର. ଭେଙ୍କଟରମଣ ।

ଆର. ଭେଙ୍କଟରମଣ ୧୯୧୦ ମସିହା ଡିସେମ୍ବର ମାସ ୪ ତାରିଖରେ ତାଞ୍ଜୋର ଜିଲ୍ଲାର ପଦ୍‌ଡୁକୋଟେ ତହସିଲର ରାଜାମାନାମ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ।

ଭେଙ୍କଟରମଣଙ୍କ ବାପା ଥିଲେ ଜଣେ ସାଧାରଣ ଚାକିରିଆ । ସେ ତହସିଲର ଜଣେ କିରାଣୀ । ସେଥିରୁ ଯାହା ରୋଜଗାର କରନ୍ତି, ସେଥିରେ ପରିବାର ଭରଣ ପୋଷଣ କରନ୍ତି । ସେଥିପାଇଁ ସେ ଭେଙ୍କଟରମଣଙ୍କୁ ଭଲ ସ୍କୁଲରେ ପାଠ ପଢ଼ାଇପାରି ନଥିଲେ । ନିଜ ଗାଁ ସ୍କୁଲରେ ପ୍ରାଥମିକ ଶିକ୍ଷା ଶେଷ କରିବା ପରେ ତାଙ୍କୁ ପଦ୍‌ଡୁକୋଟେ ଓ ମାଡ୍ରାସରେ ଶିକ୍ଷାଦାନ କରାଇଥିଲେ । ସ୍କୁଲ ଜୀବନରେ ସେ ଦେଶର ସ୍ୱାଧୀନତା ସଂଗ୍ରାମୀମାନଙ୍କ ଜୀବନୀ ମାନ ପଢ଼ି ଦେଶ ସ୍ୱାଧୀନତା ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ । ଏପରିକି ନିଜ ହାତରେ କାଗଜ ଦେହରେ ସେଟ୍ ସେଟ୍ କବିତାମାନ ଲେଖି ରାସ୍ତାରେ ପକାଇ

ଯାଇଥିଲେ । ସାଧାରଣ ଲୋକ ସେ କାଗଜକୁ ପଢ଼ି ସ୍ୱାଧୀନତା ସଂଗ୍ରାମ ବିଷୟରେ ଅନେକ କଥା ଜାଣୁଥିଲେ । ଏଥିପାଇଁ ଅବଶ୍ୟ ସେ ଅନେକବାର ପ୍ରଧାନ ଶିକ୍ଷକଙ୍କର ବିଷ ଦୃଷ୍ଟିର ଶିକାର ହୋଇଥିଲେ । ତଥାପି ତାଙ୍କ ଚଳାପଥରୁ ସେ ବିଚ୍ୟୁତ ହୋଇନଥିଲେ । ବରଂ ସ୍କୁଲ ପାଠପଢ଼ା ପରେ ଗାଁକୁ ଗାଁ ବୁଲି ଲୋକମାନଙ୍କୁ ସ୍ୱାରଜ ଆନ୍ଦୋଳନରେ ସାମିଲ ହେବାକୁ ପରାମର୍ଶ ଦେଇଥିଲେ । ଇଂରେଜମାନଙ୍କୁ ଦେଶରୁ ତଡ଼ିଦେବାକୁ ସଂଘବଦ୍ଧ ହେବାକୁ ସେ ଲୋକମାନଙ୍କୁ ପରାମର୍ଶ ଦେଉଥିଲେ । କଲେଜରେ ଅଧ୍ୟୟନ କଲାବେଳେ କଲେଜ ସାଥୀମାନଙ୍କୁ ନେଇ ସେ ଇଂରେଜମାନଙ୍କ ବିରୋଧରେ ସଭା ଆଲୋଚନା ମାଧ୍ୟମରେ ଜନ ସଚେତନତା ସୃଷ୍ଟି କରୁଥିଲେ । ଏଥିପାଇଁ ଅନେକବାର ଗୋରା ସିପାହୀମାନଙ୍କ ଠାରୁ ଲାଠି ମାଡ଼ ଖାଇଛନ୍ତି, ହେଲେ ସେ ପଥରରୁ ଓହରି ଯାଇନାହାନ୍ତି । ବରଂ ଦୁର୍ବାର ଗତିରେ ସେ ଦେଶ ସ୍ୱାଧୀନତାର ମହାଯଜ୍ଞରେ ସାମିଲ ହୋଇ ଯାଇଛନ୍ତି । ଅଭାବ ଅନାଟନ ଭିତରେ ଗତି କରି ମଧ୍ୟ ଦିନକ ପାଇଁ ସେ ହାରିଯାଇ ନାହାନ୍ତି । ବରଂ ଟିଉସନ କରି ସେ ପାଠପଢ଼ିଛନ୍ତି । ଅର୍ଥନୀତିରେ ଏମ୍.ଏ. ପାଶ୍ କରି ସେ ଏଲ୍.ଏଲ୍.ବି ରେ ନାମ ଲେଖାଇଲେ । ୧୯୩୪ରେ କୃତିତ୍ୱର ସହ ଏଲ.ଏଲ.ବି ପାଶ୍ କରିବା ପରେ ୧୯୩୧ରେ ମାନ୍ଦ୍ରାଜ ହାଇକୋର୍ଟରେ ଓକିଲାତି ବ୍ୟବସାୟ ଆରମ୍ଭ କଲେ । ସେଠାରେ ଅନେକ ଗୁରୁତ୍ୱପୂର୍ଣ୍ଣ କେଶ୍ ଗୁଡ଼ିକର ସମାଧାନ କରି ଲୋକପ୍ରିୟ ହେବା ଫଳରେ ସେ ୧୯୩୮ରେ ଦିଲ୍ଲୀର ସୁପ୍ରିମକୋର୍ଟରେ ଆଇନି ବ୍ୟବସାୟ ଆରମ୍ଭ କଲେ । ସେଠାରେ ଏହି ସମୟରେ ସେ ଅନେକ ବଡ଼ ବଡ଼ କେଶ୍ ଗୁଡ଼ିକୁ ହାତକୁ ନେଇ ତା'ର ସମାଧାନ କରି ସାରା ଭାରତରେ ଲୋକପ୍ରିୟତା ଅର୍ଜନ କରିଥିଲେ ।

ହେଲେ ଯିଏ ଭାରତ ମାଟିରୁ ପରାଧିନତାର ଦୁଃଖ ଦନ୍ୟତାର କଳାଛାଇକୁ ଦୂର କରିବାର ମୁଖ୍ୟ ପୁରୋଧା ହେବେ ସିଏବା କାହିଁକି ଏଇ ସାମାନ୍ୟ ଆଇନି ବ୍ୟବସାୟ ମଧ୍ୟରେ ସୀମିତ ରହିବେ । ତେଣୁ ଆଇନି ବ୍ୟବସ୍ଥାକୁ ତୁଚ୍ଛ କରି ଭେଙ୍କଟରମଣ ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେଇ ମାନ୍ଦ୍ରଜରେ ସ୍ୱାଧୀନତା ସଂଗ୍ରାମର ମୁଖ୍ୟ ପୁରୋଧା ହେଲେ । ଘରଦ୍ୱାର ପରିବାରକୁ ତୁଚ୍ଛ କରି ସେ ଗାନ୍ଧିଜୀଙ୍କ କରବା ମର ଡାକରରେ ପାଗଳ ହୋଇ ଉଠିଥିଲେ ।

ଏଥିପାଇଁ ସେ ଦୁଇଥର ଗୋରା ସିପାହୀମାନଙ୍କ ହାତରେ ଧରାହୋଇ କାରାବରଣ କରିଛନ୍ତି । କାରାଗାରରେ ରହି ତାଙ୍କ ସଂଗଠନକୁ ମଜବୁତ କରିବାକୁ ସେ ଚିଠି ମାଧ୍ୟମରେ ସଂଗ୍ରାମୀମାନଙ୍କୁ ଆହ୍ୱାନ ଦେଇଥିଲେ ।

ଭାରତ ସ୍ୱାଧୀନତା ପରେ ୧୯୫୨, ୧୯୫୭, ୧୯୭୭ ଏବଂ ୧୯୮୦ ମସିହାରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ୧୯୮୦ରେ ଇନ୍ଦିରା ଗାନ୍ଧିଙ୍କ ପ୍ରଧାନମନ୍ତ୍ରିତ୍ୱ କାଳରେ ସେ ଅର୍ଥମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରି ଭାରତର ଅର୍ଥନୈତିକ କ୍ଷେତ୍ରରେ ଆଣିଥିଲେ ବୈପ୍ଲବିକ ପରିବର୍ତ୍ତନ । ଯାହାଫଳରେ ଭାରତର ଅର୍ଥନୈତିକ କ୍ଷେତ୍ରରେ ଅନେକ ପ୍ରଗତି ସଂଗଠିତ ହୋଇଥିଲା । ଏହାପରେ ଭେଙ୍କଟରମଣଙ୍କ କାର୍ଯ୍ୟଦକ୍ଷତାର ପ୍ରମାଣ ପାଇବା ପରେ ଇନ୍ଦିରା ଗାନ୍ଧି ତାଙ୍କୁ ଅର୍ଥନୈତିକ କ୍ଷମତାରୁ ପ୍ରତିରକ୍ଷା କ୍ଷମତାକୁ ହସ୍ତାନ୍ତର କଲେ । ତାରି ସମୟରେ ପ୍ରତିରକ୍ଷା କ୍ଷେତ୍ରରେ ଅନେକ ଗୁରୁତ୍ୱପୂର୍ଣ୍ଣ ଆଇନ୍ ପ୍ରଣୟନ କରି ଦେଶର ପ୍ରତିରକ୍ଷା ବାହିନୀକୁ ସୁଦୃଢ଼ କରାଇଥିଲେ । ପରେ ୧୯୮୪ ପର୍ଯ୍ୟନ୍ତ ଏଇ ପ୍ରତିରକ୍ଷା ବିଭାଗରେ ଥାଇ ଲୋକପ୍ରିୟତା ଅର୍ଜନ କରିଥିଲେ । ଏହାପୂର୍ବରୁ କାମରାଜଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ତାମିଲନାଡୁର ମୁଖ୍ୟମନ୍ତ୍ରୀ ଥିଲେ । ଏବଂ ୧୯୬୭ ମସିହାରେ ଯୋଜନା କମିଶନ ଉପରେ ମଧ କାର୍ଯ୍ୟ କରିଥିଲେ । ଏହାପରେ ୧୯୫୩, ୧୯୫୫ରୁ ୧୯୫୮ ପର୍ଯ୍ୟନ୍ତ ଏବଂ ୧୯୬୧ ମସିହାରେ ସେ ଜାତିସଂଘର ସାଧାରଣ ଆସେମ୍ବ୍ଲିରେ ଭାରତର ପ୍ରତିନିଧିତ୍ୱ କରି ଭାରତର ସମ୍ମାନକୁ ଜାତିସଂଘରେ ଉପସ୍ଥାପିତ କରିଥିଲେ। ଜାତିସଂଘର ପ୍ରଶାସନିକ ଟ୍ରିବ୍ୟୁନାଲର ସଭ୍ୟ ଭାବରେ ୧୯୫୫ ମସିହାରୁ ୧୯୭୯ ପର୍ଯ୍ୟନ୍ତ ରହିଥିଲେ । ୧୯୬୯ରୁ ୧୯୭୯ ପର୍ଯ୍ୟନ୍ତ ଏହି ଟ୍ରିବ୍ୟୁନାଲର ଅଧ୍ୟକ୍ଷ ରହି ବେଶ୍ ସୁନାମ ଅର୍ଜନ କରିଥିଲେ । ପିଲାଦିନରୁ ଭେଙ୍କଟରମଣଙ୍କ ଖେଳ ପ୍ରତି ଥିଲା ବିଶେଷ ଦୁର୍ବଳତା । ଏପରିକି ସେ ଟେନିସ୍ ଖେଳାଳି ଥିଲେ । କଲେଜ କ୍ୟାରିଅରରେ ସେ ଟେନିସ୍ ଖେଳି ଲୋକପ୍ରିୟତା ଅର୍ଜନ କରିଥିଲେ । ଚିତ୍ରକଳା ଓ ସଂଗୀତ ଥିଲା ତାଙ୍କ ପ୍ରିୟ ବିଷୟ ।

ଅନେକ ସମୟରେ ସେ ଭାରତ କାହିଁକି ବିଶ୍ୱର ବିଶିଷ୍ଟ ଚିତ୍ରକରମାନଙ୍କର ଚିତ୍ରଶିଳ୍ପକୁ କ୍ରୟ କରି ଘରେ ସାଇତି ରଖୁଥିଲେ । ସଦା ହୁସେନଙ୍କର ଏକ ଚିତ୍ରକୁ ୧୦ ହଜାର ଟଙ୍କାରେ କିଣି ତାଙ୍କ ଘରର ଦାଣ୍ଡ ବାରଣ୍ଡାରେ ସାଇତି ରଖିଥିଲେ । ସେଇଥିପାଇଁ ତାଙ୍କୁ ତାଙ୍କ ପରିବାର ତରଫରୁ ବହୁ ସମାଲୋଚନାର ଶିକାର ହେବାକୁ ପଡ଼ିଥିଲା । ପରେ ଅବଶ୍ୟ ଏଥିପ୍ରତି ଅନୁତାପ କରିଥିଲେ । ୧୯୮୪ ମସିହାରେ ଉପରାଷ୍ଟ୍ରପତି ପଦ ପାଇଁ ଚିନ୍ତିତ ଥିବାବେଳେ ରାଜୀବ ଗାନ୍ଧି ଭେଙ୍କଟରମଣଙ୍କ ନାଁ ଉପସ୍ଥାପିତ କଲେ । ଭେଙ୍କଟରମଣ ପ୍ରତିରକ୍ଷା ବିଭାଗରୁ ଇସ୍ତଫା ଦେଇ ଭାରତର ଉପରାଷ୍ଟ୍ରପତି ଭାବରେ ଅଗଷ୍ଟ ମାସରେ ଶପଥ ନେଲେ । ହେଲେ ଏହାର ଦୁଇ ବର୍ଷ ପରେ ୧୯୮୭ ମସିହାରେ ଜ୍ଞାନୀ ଜୈଲ

ସିଂହ ସହ ରାଷ୍ଟ୍ରପତି କାଳପୁରି ଯିବାରୁ କିଏ ରାଷ୍ଟ୍ରପତି ହେବଏଥିପାଇଁ ଚିନ୍ତିତ ଥିବାବେଳେ କଂଗ୍ରେସର ଅନେକ କେନ୍ଦ୍ରମନ୍ତ୍ରୀ ଭେଙ୍କଟରମଣଙ୍କ ନାଁ ଉପସ୍ଥାପିତ କଲେ । ଶେଷରେ ୧୯୮୭ ଜୁଲାଇ ୨୫ ତାରିଖରେ ରମଣ ହେଲେ ଭାରତର ରାଷ୍ଟ୍ରପତି । ତାଙ୍କର ସ୍ୱଭାବ ଥିଲା ଅତ୍ୟନ୍ତ ମଧୁର ଓ ଭେଦାଭେଦ ପ୍ରୀତି ତାଙ୍କ ଠାରୁ ଥିଲା ବହୁ ଦୂରରେ । ସେ ଜଣେ ସୁବକ୍ତା ଭାବରେ ସାରା ଭାରତରେ ପରିଚିତ ଥିଲେ । ରାଷ୍ଟ୍ରପତି ଭେଙ୍କଟରମଣ ଓ ତାଙ୍କ ଧର୍ମପତ୍ନୀ ଜାନକୀ ଭେଙ୍କଟରମଣ ଦୁହେଁ ଥିଲେ ଧର୍ମପରାୟଣ । ସେ କାଞ୍ଚିର କାମକୋଟି ପୀଠର ଶଙ୍କରାଚାର୍ଯ୍ୟ ଓ ଚନ୍ଦ୍ରଶେଖର ସ୍ୱାମୀଙ୍କର ଜଣେ ପ୍ରଧାନ ଶିଷ୍ୟ । ଶଙ୍କରାଚାର୍ଯ୍ୟଙ୍କ ନିର୍ଦ୍ଦେଶକ୍ରମେ ନୂଆଦିଲ୍ଲୀରେ ଏକ ଆକର୍ଷଣୀୟ ମନ୍ଦିର ସ୍ଥାପନ କରିଥିଲେ । ସେ ମନ୍ଦିରଟି ମଲାର ମନ୍ଦିର ନାମରେ ପରିଚିତ । ଭେଙ୍କଟରମଣଙ୍କ ଶାସନ କାଳରେ ୧୯୯୦ ମସିହାରେ ଦେଶର କ୍ଷମତାସୀନ ଜନତା ଦଳର ଦଳୀୟ ଗଣ୍ଡଗୋଳ ଯୋଗୁଁ ସରକାର ଭାଙ୍ଗିଗଲା । ଏହି ପରିସ୍ଥିତିରେ କିଏ ସରକାର ଗଢ଼ିବ । କେଉଁ ଦଳର ଏକକ ସଂଖ୍ୟାଗରିଷ୍ଠ ଅଛି ଯେ, କିଏ ସରକାର ଗଢ଼ିବ ? ସମସ୍ତେ ଅନାଇଥାନ୍ତି ରାଷ୍ଟ୍ରପତି ନିର୍ଦ୍ଦେଶକୁ । ରାଷ୍ଟ୍ରପତି କାହାକୁ ସରକାର ଗଠନ କରିବାକୁ ଆହ୍ୱାନ ଦେବେ । ହଠାତ୍ ବିରୋଧିଦଳର ନେତା ପୂର୍ବତନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କୁ ରାଷ୍ଟ୍ରପତି ନିମନ୍ତ୍ରଣ କରି କହିଲେ, ତମ କଂଗ୍ରେସ ଦଳ ସରକାର ଗଠନ କରିବ କି ? ରାଜୀବ ଗାନ୍ଧି ସିଧା ସିଧା ମନା କରି ଦେଇଥିଲେ । ନାଁ ଆମ ଦଳ ସରକାର ଗଠନ କରିପାରିବ ନାହିଁ । ବରଂ ଚନ୍ଦ୍ରଶେଖରଙ୍କୁ ଆପଣ ସରକାର ଗଠନ କରିବାକୁ ଆହ୍ୱାନ କରନ୍ତୁ । ବାହାରେ ଥାଇ ତାଙ୍କୁ ଆମେ ସମର୍ଥନ ଜଣାଇବୁ ।

ତା'ପରେ ରାଷ୍ଟ୍ରପତି ନିମନ୍ତ୍ରଣ କଲେ ସଂଖ୍ୟାଲଘୁ ଜନତାଦଳରୁ ବାହାରି ଆସିଥିବା ସମାଜବାଦୀ ଜନତାଦଳକୁ । ଦେଶର ରାଜନୈତିକ ଅସ୍ଥିରତାର ପତନ ହେଲା । କେନ୍ଦ୍ରରେ ରାଜନୈତିକ ଇତିହାସରେ ପ୍ରଥମ ଥର ପାଇଁ ଗୋଟାଏ ସଂଖ୍ୟାଲଘୁ ଦଳ ତା'ର ଅଳ୍ପ ସଂଖ୍ୟକ ସଦସ୍ୟ ଓ ବିରୋଧିଦଳର ସମର୍ଥନ ପାଇ ମନ୍ତ୍ରିମଣ୍ଡଳ ଗଠନ କଲେ ।

ଭେଙ୍କଟରମଣ ରାଷ୍ଟ୍ରପତି ଥିବାବେଳେ ଅନେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟର ସମାଧାନ କରି ଲୋକପ୍ରିୟତା ଅର୍ଜନ କରିଥିଲେ । ପରେ ୧୯୯୨ ମସିହା ଜୁଲାଇ ମାସରେ ରାଷ୍ଟ୍ରପତି ପଦରୁ ଅବସର ନେବା ପରେ ସେ ନିଜ ଗ୍ରାମର ନିରାଡମ୍ବର ପରିବେଶ ଭିତରେ ଜୀବନ ନିର୍ବାହ କରୁଛନ୍ତି ।





# ଶଙ୍କର ଦୟାଲ ଶର୍ମା

(କାର୍ଯ୍ୟକାଳ - ୧୯୯୨ ଜୁଲାଇ ୨୫ - ୧୯୮୭ ଜୁଲାଇ ୨୫)

ଅଷ୍ଟମ ଶ୍ରେଣୀର ଛାତ୍ରଟିଏ, ଭାରି ଠାକୁରପ୍ରେମୀ । ଠାକୁରଙ୍କ ପୂଜା ଓ ନିଜେ ମନଭରି ନ ଖାଇବା ପର୍ଯ୍ୟନ୍ତ ଘରୁ ପାଦଟିଏ କାଢନ୍ତି ନାହିଁ । ସେଦିନ ଥାଏ ରବିବାର । ସାଥୀ ପିଲାଏ ମିଳିମିଶି ପିକ୍‌ନିକ୍ କରି ଯିବାକୁ ସ୍ଥିର କଲେ । ଠିକ୍ ୭ଟା ବେଳକୁ ଆସି ଗାଁ ଦାଣ୍ଡରେ ମେଳି ହେବା ପରେ ତା'ପରେ ଅନ୍ୟାନ୍ୟ କାର୍ଯ୍ୟକ୍ରମ । ଏଥିରେ ସମସ୍ତେ ସମ୍ମତି ଜଣାଇଲେ । ରାତି ପାହି ସକାଳ ହେଲା । ନିର୍ଦ୍ଦିଷ୍ଟ ସ୍ଥାନରେ ସମସ୍ତେ ଆସି ପହଞ୍ଚିଗଲେ । ହେଲେ ପିକ୍‌ନିକ୍ ପାଇଁ ପ୍ରସ୍ତାବ ଦେଇଥିବା ପିଲାଟିର ଦେଖାନାହିଁ । ୭ଟାରୁ ୮ଟା ବାଜିଲା । ତଥାପି ଦେଖାନାହିଁ । ସବୁ ପିଲା ବିବ୍ରତ ହୋଇଗଲେ । ମେଳି ହୋଇ ଚାଲିଲେ ତା' ଘରକୁ । ପିଲାଟିର ବାପା, ଆସି କହିଲେ, ହଇରେ ପିଲାଏ ଆସ, ଦାଣ୍ଡରେ କାହିଁକି ଠିଆ ହେଲ । ତମ ସାଙ୍ଗ ଠାକୁରଙ୍କ ସେବାରେ ବ୍ୟସ୍ତ ଅଛି । ସତକୁ ସତ କିଛି ସମୟ ପରେ ପିଲାଟି ଚିତା ଚୈତନ ହୋଇ ଠାକୁରଘରୁ ବାହାରି ଆସି ସାଙ୍ଗମାନଙ୍କୁ ଠାକୁରଙ୍କ ପ୍ରସାଦ ଦେଲା । କହିଲା, କ'ଣ କରିବି ? ଠାକୁରଙ୍କ ପୂଜା କରୁ କରୁ ଡେରି ହୋଇଗଲା । ଏଇତ ମୋ କାମ ସାଥେ ସାଥେ ସରିଲା । ତା'ପରେ ପୁଣି ଅଧ ଘଣ୍ଟାଏ ଡେରି । ସାଥୀ ପିଲାମାନେ ବିବ୍ରତ ହୋଇଗଲେ । କଥା କ'ଣ, ପୁଣି ଡେରି କ'ଣ ପାଇଁ ? ଏଥର ପିଲାଟି ହସି ହସି ଆସି କହିଲା, ଆରେ ଭାଇମାନେ ଠାକୁର ପୂଜା କରିସାରିଲା ପରେ ମନଭରି ଖାଇଦେଇ ମୁଁ ଘରୁ ପାଦ କାଢ଼େ । ପୂଜା ପାଠ, ଭଜନ କୀର୍ତ୍ତନ ନକଲେ ଦିନଯାକ ମନଟା ଭଲ ରହେନା । ତା'ଛଡ଼ା ମନଭରି ଖାଇ ନେଇଥିଲେ ଆଉକିଛି ଚିନ୍ତା

ନାହିଁ । ଏକଥା ଶୁଣି ସାଙ୍ଗମାନେ ତାକୁ ପରିହାସ କରି କହିଲେ, ଆରେ ଭୂତ ,ଏସବୁ କାମ ହେଲା ବୁଢ଼ାମାନଙ୍କର । ଏଥିରେ ଏତେ ମନ ଦେଲେ ଲାଭ କ'ଣ କହିଲୁ ? ପିଲାଟି ଅତି ସଫା ସଫା ଭାବରେ ସାଥିମାନଙ୍କୁ ଉତ୍ତର ଦେଲା ଭୋଜନ, ଆଉ ଭଜନ, ଦୁଇଟି ଯାକ ଜୀବନ ପାଇଁ ଏକାନ୍ତ ଆବଶ୍ୟକ । ଭୋଜନ ଶରୀରକୁ ଶକ୍ତି ଦିଏ, ଆଉ ଭଜନ ଆତ୍ମାକୁ ସୁଦୃଢ଼ କରେ । ତେବେ ସେଦିନର ସେ ପିଲାଟି ଅନ୍ୟ କେହି ନୁହେଁ- ସେ ହେଲେ ଭାରତର ପୂର୍ବତନ ରାଷ୍ଟ୍ରପତି ଶଙ୍କର ଦୟାଲ ଶର୍ମା ।

ଭୋପାଳର ପ୍ରସିଦ୍ଧ ବୈଦ୍ୟ ପଣ୍ଡିତ ଖୁସିଲାଲଙ୍କ ପରିବାରର ଅନ୍ୟତମ । ସେ ନିଜ ହାତରେ ଔଷଧ ତିଆରି କରୁଥିଲେ । ଅନ୍ୟମାନଙ୍କୁ ହଇରାଣ ହରକତ କରି ପଇସା ରୋଜଗାର କରିବାକୁ ଚାହୁଁନଥିଲେ । ୧୯୧୮ ମସିହା ଅଗଷ୍ଟ ୧୫ ତାରିଖ ପିତା ଖୁସିଲାଲ ଶର୍ମା ଓ ମାତା ସୁଭଦ୍ରା ଦେବୀଙ୍କ କୋଳ ମଣ୍ଡନ କରି ପୁଅଟିଏ ଜନ୍ମ ନେଲା । ଖୁସିଲାଲଙ୍କର ଇଷ୍ଟଦେବତା ଥିଲେ ଶଙ୍କର । ପ୍ରଭୁ ଶଙ୍କରଙ୍କ କୃପାରୁ ପୁଅଟିଏ ପାଇଥିବାରୁ ତାଙ୍କ ନାମଦେଲେ ଶଙ୍କର ଦୟାଲ ଶର୍ମା । ଜ୍ୟୋତିଷ ଜାତକ କଲାବେଳେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଏବଂ ଖୁସିଲାଲଙ୍କୁ ହସି ହସି କହିଥିଲେ- ଶର୍ମାଜୀ ଏ ପିଲା ଅତି ସାଧାରଣ ପିଲା ନୁହେଁ, ଏହା ଦୁନିଆରେ ବେଶ୍ ନାଁ କମାଇବ । ଖୁସିଲାଲ ବାଲ୍ୟ ବିବାହ କରିଥିଲେ ଓ ଶଙ୍କରଙ୍କ ଜନ୍ମ ପରେ ତାଙ୍କ ସ୍ତ୍ରୀଙ୍କ ସ୍ୱାସ୍ଥ୍ୟାବସ୍ଥା ଦିନକୁ ଦିନ ଖରାପ ହେବାକୁ ଲାଗିଲା । ଅନେକ ଚେଷ୍ଟା ପରେ ସେ ସବୁଦିନ ପାଇଁ ଆଖି ବୁଜିଦେଲେ । ଶଙ୍କରଙ୍କୁ ମଣିଷ କରିବା ପାଇଁ ଖୁସିଲାଲ ଦ୍ୱିତୀୟ ବିବାହ କରିଥିଲେ । ତାଙ୍କ ନାଁ ଥିଲା ସଂପତି ବାଈ ସେ ଶଂକରଙ୍କର ଲେଖାରେ ମାଉସୀ ସଂପର୍କୀୟା ଥିଲେ । ଶଙ୍କରଙ୍କୁ ଏମିତି ସ୍ନେହ ଦେଲେ ଶେଷରେ ନିଜର ମାଙ୍କୁ ମଧ ପାଶୋରୀ ଦେଲେ । ସଂପତି ବାଈ ପରେ ଅବଶ୍ୟ ଚାରୋଟି ପୁତ୍ର ସଂନ୍ତାନର ଜନନୀ ହୋଇଥିଲେ । ସେମାନେ ହେଲେ ସ୍ୱାୟୁ ଦୟାଲ, ଶିବା ଦୟାଲ, ଇଷ ଦୟାଲ ଓ ସୋମଶ ଦୟାଲ । ହେଲେ ଆଶ୍ଚର୍ଯ୍ୟର କଥା ସେ ସବୁଠୁ ଅଧିକ ସ୍ନେହ କରୁଥିଲେ ଶଙ୍କରଙ୍କୁ ।

ଭୋପାଳର ରାମକୃଷ୍ଣ ପାଠାଗାରରେ ବାଳକ ଶଙ୍କରଙ୍କ ପାଠପଢ଼ା ଆରମ୍ଭ ହୋଇଥିଲା । ଚାଟଶାଳୀରେ ତାଙ୍କର ଅତି ପ୍ରିୟ ସହପାଠୀ ଥିଲେ ରତନ କୁମାର । ପାଠପଢ଼ା ସହ କୁସ୍ତି କସରତ, ଚେସ୍ ଖେଳରେ ବେଶ୍ ପାରଦର୍ଶିତା ଦେଖାଇଥିଲେ ଓ ଭୋପାଳରେ ରହି ସେ ଆଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଭୋପାଳରୁ ଶଙ୍କର ଆଗ୍ରା ଯାଇ ସେଣ୍ଟ ଜୋନ୍ସ କଲେଜରେ ପଢ଼ିଲେ । ଆଗ୍ରାରୁ ବି.ଏ. ପାଶ୍ କଲାପରେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରେ

ଯୋଗଦେଲେ । ସେଠାରେ ଡକ୍ଟର ରାଧାକମଲ ମୁଖାର୍ଜୀ, ବୀରବର ସାହାଣୀ, ପିତାମ୍ବର ଦତ୍ତଙ୍କ ଭଳି ପ୍ରସିଦ୍ଧ ପଣ୍ଡିତଙ୍କୁ ଗୁରୁ ରୂପେ ପାଇଥିଲେ । ଲକ୍ଷ୍ନୌରୁ ସେ ଇଂରାଜୀ, ହିନ୍ଦୀ ଓ ସଂସ୍କୃତରେ ଏମ୍.ଏ. ପାଶ୍ କଲେ । ପରେ ଏଲ.ଏଲ.ବି., ଏମ୍.ଏଲ.କମ୍. ଉପାଧି ଲାଭ କଲେ । ଏହାପରେ ତାଙ୍କୁ ଅଧ୍ୟାପକ ଚାକିରି ମିଳିଗଲା । ଏହି ଅଧ୍ୟାପକ ଚାକିରି ତାଙ୍କ ପରିବାରରୁ ଆର୍ଥିକ ସମସ୍ୟାକୁ ଦୂର କରିଥିଲା ।

ଏତିକି, ଉପାଧିରେ ସେ ସନ୍ତୁଷ୍ଟ ହୋଇ ରହିନଥିଲେ । ବିଦେଶରେ ନାଁ କମାଇବାକୁ ତାଙ୍କର ମନ ହେଲା । ସେଥିପାଇଁ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟକୁ ଯାତ୍ରା କଲେ । ଲଣ୍ଡନରୁ ବାରିଷ୍ଟର, ସାଧାରଣ ପ୍ରଶାସନରେ ଡିପ୍ଲୋମା, ଏଫ୍.ଆର.ସି. ଉପାଧି ଲାଭ କଲେ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଆଇନରେ ଡକ୍ଟରେଟ, ହାୱାର୍ଡ଼ ବିଶ୍ୱବିଦ୍ୟାଳୟରୁ ଅସାଧାରଣ ଡିଗ୍ରୀ ହାସଲ କରି ଦେଶକୁ ଫେରିଥିଲେ । ବିଦେଶରୁ ପ୍ରତ୍ୟାବର୍ତ୍ତନ କରିବା ପରେ ଶଙ୍କର ଲକ୍ଷ୍ନୌରେ ଅଧ୍ୟାପନା କାର୍ଯ୍ୟ ଆରମ୍ଭ କଲେ । ସେହି ଅଧ୍ୟାପନା କାର୍ଯ୍ୟରେ ବୁଡ଼ି ରହିବାକୁ ମନ ବଳିଲା ନାହିଁ । ଭୋପାଳବାସୀଙ୍କ ସୁଖ ଦୁଃଖରେ ଭାଗୀଦାର ହେବାକୁ ମନ ବ୍ୟାକୁଳ ହୋଇ ଉଠିଲା । ହେଲେ ଲକ୍ଷ୍ନୌର କୁଳପତି ,ତାଙ୍କୁ ଏତେଶୀଘ୍ର ଛାଡ଼ିବାକୁ ମନ ବଳାଇଲେ ନାହିଁ । ବଡ଼ ଅସୁବିଧା ପରିସ୍ଥିତି ସୃଷ୍ଟି ହେଲା । ଶଙ୍କର ଦୟାଳ ବାଧ ହୋଇ ଛୁଟି ନେଇ ଭୋପାଳ ଚାଲି ଆସିଲେ ଓ ପରେ ସାବିତ୍ରୀ ଦେବୀଙ୍କୁ ବିବାହ କଲେ । ଗୋଟିଏ ସନ୍ତାନ ପରେ ସାବିତ୍ରୀ ଦେବୀ ମୃତ୍ୟୁବରଣ କରିବାରୁ ସେ କମଳାଙ୍କୁ ଦ୍ୱିତୀୟ ବିବାହ କରିଥିଲେ । କମଳା ଗୋଟିଏ ପୁଅ ଓ ଦୁଇଟି ଝିଅର ଜନନୀ ହେଲେ ।

ଭାରତ ସ୍ୱାଧୀନତା ପାଇବା ପରେ ଭୋପାଳ ରାଜା ଉଲ୍ଲହ ଖାଁ ଭୋପାଳକୁ ସ୍ୱତନ୍ତ୍ର ରାଜ୍ୟ ଗଠନ ପାଇଁ ଜୋର୍‌ଦାର ଉଦ୍ୟମ ଆରମ୍ଭ କଲେ । ଏପରିକି ଭୋପାଳର ସ୍ୱତନ୍ତ୍ର ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ବ୍ୟବସ୍ଥାମାନ ଗ୍ରହଣ କରିଥିଲେ । ଏତିକିବେଳେ ପ୍ରଜାମଣ୍ଡଳ ଆନ୍ଦୋଳନ ଖୁବ୍ ଜୋର୍‌ରେ ମୁଣ୍ଡ ଟେକି ଉଠିଲା । ସେ ଆନ୍ଦୋଳନର ମୁଖ୍ୟ ପୁରୋଧା ଥିଲେ ଶଙ୍କର ଦୟାଳ ଶର୍ମା । ସମୟ ଆସିଲା ରାଜା ପରାଜୟ ବରଣ କଲେ । ଲୋକଶକ୍ତିର ଜୟ ହେଲା ଓ ସବୁଦିନ ପାଇଁ ଭୋପାଳ ଭାରତ ମାନଚିତ୍ରରେ ମିଶିଗଲା । ଏହି ପ୍ରଜାମଣ୍ଡଳ ଆନ୍ଦୋଳନରେ ଶଙ୍କର ଅନେକବାର ଜେଲ୍ ଯାଇଛନ୍ତି । ୧୯୪୯ ଜୁନ୍ ୧ ତାରିଖରେ ଭୋପାଳ ଭାରତ ସହିତ ମିଶିବା ପରେ ଏନ୍.ବି. ବାନାର୍ଜୀ ଭୋପାଳର ଚିଫ୍ କମିଶନର ହେଲେ । ପ୍ରଜାମଣ୍ଡଳଙ୍କ ନେତୃତ୍ୱରେ ବିଜୟ ହୋଇଥିବାରୁ ଶଙ୍କର ଦୟାଳ ଏକ ମହାନ୍ ନେତାର ପରିଚୟ ଦେଇ ସେ ହେଲେ ଭୋପାଳ କଂଗ୍ରେସ କମିଟିର

ସଭାପତି । ପରେ ବେସରିଆ ବିଧାନସଭାରୁ ନିର୍ବାଚିତ ହୋଇ ଭୋପାଳ ବିଧାନସଭାର ନେତା ଭାବରେ ନିର୍ବାଚିତ ହେଲେ ଓ ୩୪ ବର୍ଷ ବୟସରେ ଭୋପାଳର ମୁଖ୍ୟମନ୍ତ୍ରୀ ଭାବରେ ସେ ଶପଥ ନେଲେ । ପରବର୍ତ୍ତୀ ସମୟରେ ଶଙ୍କର ମଧ୍ୟପ୍ରଦେଶର ଶିକ୍ଷାମନ୍ତ୍ରୀ, ଲୋକ ନିର୍ମାଣ ମନ୍ତ୍ରୀ ଓ ବାଣିଜ୍ୟ ଉପମନ୍ତ୍ରୀ ଭାବରେ ରହିଥିଲେ । ଏହି ସମୟରେ ତାଙ୍କୁ କିଏ ଜଣେ ବିଦ୍ରୂପ କରି କହିଥିଲା ଯେ ମନ୍ତ୍ରୀ ପଦ ଛାଡ଼ିବା ପରେ ଆପଣଙ୍କୁ ପୁଣି ଶିକ୍ଷକ ହେବାକୁ ହେବ । ସେ ହସି ହସି କହିଥିଲେ, ମୁଁ ପ୍ରଥମେ ଶିକ୍ଷକ ତା'ପରେ ମନ୍ତ୍ରୀ । ଯଦି କେବେ ସେ ସୁଯୋଗ ଆସେ ମୁଁ ନିଶ୍ଚିତ ଶିକ୍ଷକ ହେବି । ଶିକ୍ଷକ ହେବା ମୋ ପାଇଁ ଗର୍ବ ଓ ଗୌରବର ବିଷୟ । କଂଗ୍ରେସ ଅଧ୍ୟକ୍ଷ ଭାବରେ ଦୁଇ ବର୍ଷ କାର୍ଯ୍ୟ କରିବା ପରେ ଇନ୍ଦିରା ଗାନ୍ଧିଙ୍କ ମନ୍ତ୍ରିମଣ୍ଡଳରେ ସଞ୍ଚୟ ମନ୍ତ୍ରୀ ରୂପରେ ନିଯୁକ୍ତି ହେଲେ । ଦେଶର ଆର୍ଥିକ ଓ ସାମାଜିକ ବିକାଶରେ ଏହାର ମହତ୍ତ୍ୱ ଥିଲା ଅଧିକ ଏବଂ ତାଙ୍କରି ସମୟରେ ଦେଶର ୩୧ ହଜାର ନୂଆ ଡାକଘର ତିଆରି ହୋଇଥିଲା ।

ତା'ପରେ ତାଙ୍କୁ ଆନ୍ଧ୍ର ପ୍ରଦେଶର ରାଜ୍ୟପାଳ ଭାବେ ନିଯୁକ୍ତି ଦିଆଗଲା । କାରଣ ଆନ୍ଧ୍ରପ୍ରଦେଶର ସଂକଟାପନ୍ନ ସ୍ଥିତିକୁ ସୁଧାରିବା ପାଇଁ ତାଙ୍କ ପରି ଜଣେ ଦକ୍ଷ ରାଜ୍ୟପାଳଙ୍କ ଆବଶ୍ୟକତା ପଡୁଥିଲା । ତାଙ୍କ ଯୋଗଦାନ ପରେ ଆନ୍ଧ୍ରର କଳୁଷିତ ରାଜନୀତି ସ୍ୱଚ୍ଛ, ନିର୍ମଳ ଓ ପବିତ୍ର ହୋଇ ଉଠିଲା ।

ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଲା ଆନ୍ଧ୍ରର ରାଜ୍ୟପାଳ ଥିବାବେଳେ ତାଙ୍କ ଝିଅ ଗୀତାଞ୍ଜଳି ଓ ଜ୍ୱାଇଁ ଲଳିତ ସାମନ୍ତଙ୍କୁ ନିର୍ମମ ଭାବରେ ଉଗ୍ରପନ୍ଥୀମାନେ ହତ୍ୟା କରିଥିଲେ । ହେଲେ ଶଙ୍କର ଦୟାଲ ସାମାନ୍ୟତମ ବିଚଳିତ ନ ହୋଇ ସ୍ଥିର ମନରେ ରହିଥିଲେ । ଏପରିକି କୌଣସି ରାଜନୈତିକ ଚାପ ମଧ୍ୟ ପକାଇ ନଥିଲେ । ପାଲଟା ଯୁକ୍ତି ବାଢ଼ିଲେ, ଏହା ପୋଲିସର କାମ । ପୋଲିସ ପ୍ରକୃତ ଅପରାଧୀକୁ ଦଣ୍ଡ ଦେବ । ''ଏହା କେବଳ ଜଣେ ଧୈର୍ଯ୍ୟଶୀଳ ବ୍ୟକ୍ତିର ମନକଥା ଛଡ଼ା ଆଉ ବା କ'ଣ ହୋଇପାରେ ?''

ମହାରାଷ୍ଟ୍ରରେ ମାତ୍ର ଅଳ୍ପଦିନ ରାଜ୍ୟପାଳ ହୋଇ ରହିଥାନ୍ତି । ଏତିକିବେଳେ ଶଙ୍କର ଦୟାଲଙ୍କର ଜୀବନରେ ଏକ ପରିବର୍ତ୍ତନ ହେଲା । ଉପରାଷ୍ଟ୍ରପତି ରାମସ୍ୱାମୀ ଭେଙ୍କଟରମଣ ରାଷ୍ଟ୍ରପତି ହେବାପରେ ଉପରାଷ୍ଟ୍ରପତି ପଦ ଖାଲି ପଡ଼ିଲା । ତେଣୁ ଭାରତର ଉପରାଷ୍ଟ୍ରପତି ପଦ ପାଇଁ ଶଙ୍କର ଦୟାଲଙ୍କୁ ହିଁ ବଛାଗଲା । ସେ ହେଲେ ଭାରତର ଅଷ୍ଟମ ଉପରାଷ୍ଟ୍ରପତି । ୧୯୯୨ ମସିହା ଜୁଲାଇ ୨୫ ତାରିଖରେ ଭେଙ୍କଟରମଣଙ୍କ କାର୍ଯ୍ୟକାଳ ଶେଷ ହୋଇଥାଏ, ତା'ପୂର୍ବରୁ ରାଷ୍ଟ୍ରପତି ନିର୍ବାଚନର ପ୍ରକ୍ରିୟାକରଣ ଘରିଥାଏ । ଶଙ୍କର

ଦୟାଲ ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀ ହୋଇଥାନ୍ତି ଓ ତାଙ୍କ ବିରୁଦ୍ଧରେ ରାମଜେଠ ମାଲାନୀ, ଯୋଗୀନ୍ଦର ସିଂ, ଧରିତି ପକଡ଼ ନିର୍ବାଚନ ରଣାଙ୍ଗନରେ ପ୍ରତିଦ୍ୱନ୍ଦ୍ୱିତା କରୁଥାନ୍ତି ।

ଶେଷରେ ସବୁ କଳ୍ପନା ଜଳ୍ପନାର ଅବସାନ ଘଟାଇ ଶଙ୍କର ଦୟାଲ ୬,୭୫,୮୬୪ ଭୋଟ ପାଇ ନବମ ରାଷ୍ଟ୍ରପତି ଭାବରେ ନିର୍ବାଚିତ ହେଲେ । ଦେଶର ସର୍ବୋଚ୍ଚ ପ୍ରଶାସନିକ ଅଧିକାରୀ ଭାବରେ ପ୍ରତିଷ୍ଠିତ ହୋଇ ମଧ୍ୟ ସେ ନିତିଦିନିଆ ପୂଜାପାଠକୁ ପାଶୋରୀ ନଥିଲେ । ଶଙ୍କର ଦୟାଲଙ୍କ ଜୀବନ ଏକ କର୍ମଯୋଗୀର ଉଦାହରଣ କହିଲେ କେବେ ଭୁଲ ହେବନାହିଁ। ନ୍ୟାୟୋଚିତ ମାର୍ଗରେ ସବୁ କାର୍ଯ୍ୟ ସଂପାଦିତ କରୁଥିବାରୁ କିଛି ଲୋକ ତାଙ୍କର ବିରୋଧୀ ହୋଇ ଉଠିଥିଲେ । ହେଲେ ପରବର୍ତ୍ତୀ ସମୟରେ ନିଜର ଭୁଲ ବୁଝିପାରି ଶଙ୍କର ଦୟାଲଙ୍କ ପାଖରେ ମୁଣ୍ଡ ନୁଆଇଁଥିଲେ । ଶଙ୍କର ଦୟାଲ ଇତିହାସ ଛାତ୍ର ନଥିଲେ । ମାତ୍ର ଦେଶର ଇତିହାସ ସଂପର୍କରେ ତାଙ୍କର ଗଭୀର ଜ୍ଞାନ ଥିଲା । ସେ ବିଶ୍ୱାସ କରୁଥିଲେ "ଇତିହାସ କେବଳ ଘଟଣା ବାହକ ନୁହେଁ ବରଂ ବିଚାର ପରବର୍ତ୍ତ ଅଟେ ।" ସାମାଜିକ ଭୋଜ ବିଦ୍ୟାର ନିରାକରଣ ପାଇଁ ଇତିହାସକୁ ପଢ଼ିବା ଉଚିତ ବୋଲି ସେ ମନେ କରୁଥିଲେ । କାରଣ ଇତିହାସ ଆମ ଜୀବନର ସାକ୍ଷୀ ସ୍ୱରୂପ ଓ ଏହା ମଧ୍ୟ ଆମ ସଂସ୍କୃତିର ରକ୍ଷାକର୍ତ୍ତା । ଶଙ୍କର ଦୟାଲ ଅଧିକ ଶୁଣୁଥିଲେ, କମ୍ କଥା କହୁଥିଲେ । ସମୟକୁ ବେଶୀ ମୂଲ୍ୟବାନ ମନେକରି ପ୍ରତିଟି ମୁହୂର୍ତ୍ତକୁ ସେ କାମରେ ଲଗାଉଥିଲେ । ପ୍ରତ୍ୟେକ ସଭାରେ ସେ କହୁଥିଲେ, "ସତ୍ୟର ମାର୍ଗ ଅତ୍ୟନ୍ତ ସଫା ସୁତୁରା ଏବଂ ସିଧା ମଧ୍ୟ । ହେଲେ ଅସତ୍ୟର ମାର୍ଗ ବହୁ ବୁଲାଣି ।" ଦେଶର ସର୍ବୋଚ୍ଚ ପଦବୀରେ ରହି ମଧ୍ୟ ସେ ତାଙ୍କ ପରିବାରକୁ ଭୁଲି ନଥିଲେ । ସେ କୁହନ୍ତି- "ଯେଉଁ ପରିବାର ପାଇଁ ଆଜି ମୁଁ ଏ ସ୍ଥାନରେ ବସିଛି ତାକୁ ଏତେ ସହଜରେ ଭୁଲିବି କିପରି ?"

କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ସେ ଆଇନରେ ଡକ୍ଟରେଟ କରିଥିଲେ । ସେ ଏଭଳି ଏକ ପ୍ରବନ୍ଧ ଲେଖିଥିଲେ ତାଙ୍କୁ ମୌଖିକ ପରୀକ୍ଷା ଦେବାକୁ ପଡିନଥିଲା । ବୋଧହୁଏ ସେ ପୃଥିବୀର ପ୍ରଥମ ଯେ କି କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଏ ପ୍ରକାର ସୁବିଧା ପାଇଥିଲେ । ମରିସସ୍ ବିଶ୍ୱବିଦ୍ୟାଳୟରୁ ଡଃ ସିଭିଲ, ବିକ୍ରମ ବିଶ୍ୱବିଦ୍ୟାଳୟ, ଭୋପାଳ ବିଶ୍ୱବିଦ୍ୟାଳୟ, ତିରୁପତି ବିଶ୍ୱବିଦ୍ୟାଳୟ, ଆଗ୍ରା ବିଶ୍ୱବିଦ୍ୟାଳୟ, ଭେଙ୍କଟେଶ୍ୱର ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଉପାଧି ପାଇଥିଲେ । ରୁଡ୍କି ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟର ଅଫ୍ ସୋସିଆଲ ସାଇନ୍ସ ଓ ମେରୁ ବିଶ୍ୱବିଦ୍ୟାଳୟ ଡକ୍ଟର ଅଫ୍ ଲିଟରେଚର ଉପାଧି ପ୍ରଦାନ କରିଥିଲେ । ଦୀର୍ଘ ୫ ବର୍ଷ କାଳ ରାଷ୍ଟ୍ରପତି ପଦରେ ରହିବା ପରେ ୧୯୯୭ ଜୁଲାଇ ୨୫ରେ ରାଷ୍ଟ୍ରପତି

ପଦରୁ ଶଙ୍କର ଦୟାଲ ଶର୍ମା ଅବସର ନେଲେ ।

ସବୁଦିନ ପାଇଁ ରାଷ୍ଟ୍ରପତି ଭବନର କର୍ମଚାରୀ ଓ ମୋଗଲ ଉଦ୍ୟାନକୁ ପଛରେ ପକାଇ ନିଜ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଯାହା ସେଠାରେ ରହିଲା ତାହା ତାଙ୍କ ଅତୀତର ସୁଖ ଦୁଃଖର ସ୍ମୃତି ସମୂହ ଛଡା ଆଉ କିଛି ନୁହେଁ ।

ସେଦିନ ଥାଏ ୧୯୯୯ ମସିହା ଡିସେମ୍ବର ୨୬ ତାରିଖ ।

ହଠାତ୍ ସେ ଅସୁସ୍ଥ ହୋଇପଡ଼ିଲେ । ଡାକ୍ତରମାନଙ୍କ ଅକ୍ଳାନ୍ତ ପରିଶ୍ରମକୁ ବିଫଳ କରି ଶଙ୍କର ଦୟାଲ ଶର୍ମା ସବୁଦିନ ପାଇଁ ତାଙ୍କ ପ୍ରିୟ ଭାରତ ଭୂମିକୁ ଛାଡ଼ି ଆରପାରିକୁ ଚାଲିଗଲେ । ସେଦିନ ସବ୍‌ଦରଜଙ୍ଗ ବାସଭବନଟି ମୁହୂର୍ତ୍ତକ ମଧରେ ଲୋକାରଣ୍ୟ ହୋଇ ଉଠିଲା ।

ତାଙ୍କ ମର ଶରୀରକୁ ଯମୁନା ଘାଟର ଶ୍ମଶାନକୁ ନିଆଗଲା । ପରେ ତାଙ୍କ ପୁଅ ଆଶୁତୋଷ ଶର୍ମା ପିତାଙ୍କ ମର ଶରୀରରେ ମୁଖାଗ୍ନି ଦେଇଥିଲେ । ଦୁଃଖର କଥା, ତାଙ୍କର ମାଆ ସଂପତ ଦେବୀ ସେଠାରେ ଉପସ୍ଥିତ ଥିଲେ । ମାଆଙ୍କ ଆଖିଆଗରେ ନିମିଷକ ମଧରେ ଶଙ୍କର ଦୟାଲଙ୍କ ମର ଶରୀର ପାଉଁଶରେ ପରିଣତ ହୋଇଗଲା । କେବଳ ଶୁଭୁଥିଲା 'ଶଙ୍କର ଦୟାଲ ଅମର ରହେ ।'







# କେ. ଆର. ନାରାୟଣନ୍

(କାର୍ଯ୍ୟକାଳ - ୧୯୯୭ ଜୁଲାଇ ୨୫ - ୨୦୦୨ ଜୁଲାଇ ୨୫)

ସେଦିନଟି ଥାଏ ହୋଲି । ହୋଲିର ରଙ୍ଗ ଖେଳରେ ସଭିଏଁ ମାତି ଉଠିଥାନ୍ତି । ହାତରେ ରଙ୍ଗ ପିଚକାରି ଧରି ଘରକୁ ଘର ବୁଲି ରଙ୍ଗ ଖେଳିବାର ଯେଉଁ ମଜା ତାହା କେବଳ ସେଇମାନେ ହିଁ ଅନୁଭବ କରିଥାନ୍ତି । କେରଳର କଟାୟମ ଜିଲ୍ଲାର ଓଝବୁର ଗାଁର ପିଲାଠାରୁ ବୁଢ଼ା ସମସ୍ତେ ହୋଲି ଖେଳରେ ମାତି ଉଠିଥାନ୍ତି । ହଠାତ୍ ରଙ୍ଗ ଖେଳକୁ ନେଇ ଦେଖାଗଲା ପାଟିତୁଣ୍ଡ । ସାମାନ୍ୟ ପାଟିତୁଣ୍ଡ ପରେ ପରେ ବିରାଟ ଗଣ୍ଡଗୋଳର ରୂପ ନେଲା । ସାଥେ ସାଥେ ଏ ଖବର ପବନ ବେଗରେ କାଟାୟମ ଜିଲ୍ଲାରେ ପ୍ରଚାରିତ ହୋଇଗଲା । ନିଜ ନିଜର ସମର୍ଥକମାନଙ୍କୁ ନେଇ ପରିବେଶ ଗମ୍ଭୀର ହୋଇଉଠିଲା । ତମାମ୍ ଜିଲ୍ଲାଟା କେଇଟି ଘଣ୍ଟା ଭିତରେ ବିଭକ୍ତ ହୋଇଗଲା । ଯେଉଁଠି ଦେଖିବ ସେଠି ଠେଙ୍ଗା ବାଡ଼ି ବୁଲିଲା । ନିରୀହ ଲୋକଗୁଡ଼ା ଲହୁ ଲୁହାଣ ହୋଇଗଲେ । ଏମିତି ଏକ ପରିସ୍ଥିତିକୁ ଗୋରା ସାହେବମାନେ ଅପେକ୍ଷା କରି ବସିଥିଲେ । ନିଜ ନିଜ ଭିତରେ ଝଗଡ଼ା ଲଗାଇ ରାଜନୈତିକ ଫାଇଦା ଉଠାଇବାର ସିଦ୍ଧହସ୍ତ ଯେ ଗୋରା ସିପାହୀ ଦଳ । ତେଣୁ ସେମାନେ ତାଙ୍କ କାରସାଦିରେ ଲାଗିଗଲେ ।

ହେଲେ ଏସବୁ ଘଟଣାକୁ ମାତ୍ର ୨୦ ବର୍ଷର ଯୁବକଟିଏ ବସି ଦେଖୁଥାଏ । ମନରେ ତାର ବିରକ୍ତି ଭାବ । ଗୋଟିଏ ମାଟିର ସନ୍ତାନ ଆମେ, ଆମ ପାଖରେ ଏ ପ୍ରଭେଦ । ହୀନମନ୍ୟତା, କ'ଣ ପାଇଁ ? କାହିଁକି ନିଜ ନିଜ ଭିତରେ ରକ୍ତପାତ । ଏହାରି ସୁଯୋଗ ନେଇ ଗୋରା ପାଇକ ଆମକୁ କାବୁକରି ନେଲେଣି । ଅଥଚ ଆମମାନଙ୍କର ନିଦ ଭାଙ୍ଗୁନାହିଁ । ନାଁ, ଏଥିପାଇଁ କିଛି ବାଟ କରିବାକୁ ହେବ........

ଯୁବକ ଜଣକ ଗାଁର ଶେଷମୁଣ୍ଡ ମନ୍ଦିର ବେଢ଼ାକୁ ଯାଇ ଖୁବ୍ ଜୋର୍‌ରେ ପାଟି କରି ଉଠିଲା । ଯୁବକଟିର ପାଟି ଶୁଣି ଓଝାବୁର ଗାଁର ଶହ ଶହ ଲୋକ ଠେଙ୍ଗା ବାଡ଼ି ଧରି ପହଞ୍ଚିଗଲେ, କଥା କ'ଣ । ସମସ୍ତେ ଝଗଡ଼ା କରିବାକୁ ପ୍ରସ୍ତୁତ ।

ଯୁବକଟି ଧୀର ସ୍ୱରରେ କହିଲା, ଭାଇମାନେ ଆମେ ସବୁ ଗୋଟିଏ ମା'ର ସନ୍ତାନ୍ । ଭାରତ ଆମର ଜନ୍ମଭୂମି । କ'ଣ ପାଇଁ ଆମେ ନିଜ ନିଜ ଭିତରେ ହଣାକଟା ହେବା । କାହିଁକି ବିଦେଶୀ ବଣିକମାନଙ୍କୁ ଆମ ଦେଶର ଶାସନତନ୍ତ୍ର ପ୍ରତିଷ୍ଠା କରିବାକୁ ସୁଯୋଗ ଦେବା । ଆସ ଆମ ଭିତରୁ ସବୁ ରାଗ ରୋଷକୁ କାଢ଼ିନେଇ ଆମ ମା' ମାଟିର ସେବା କରିବା ।

ଯୁବକଟିର କେଇପଦ କଥା ସାରା ଗାଁଟା ଯାକର ଲୋକଙ୍କର ହୃଦୟକୁ ଛୁଇଁଗଲା । ସେମାନେ ଜାଗ୍ରତ ହୋଇଉଠିଲେ । ସାମାନ୍ୟ ଭୁଲ ପାଇଁ ଆମେ କେତେବଡ଼ ସମସ୍ୟାର ସୂତ୍ରପାତ କରାଇଲେ । ନିଜ ନିଜ ହାତରୁ ଠେଙ୍ଗା ବାଡ଼ି ଖସାଇ କୋଳାକୋଳି ହୋଇ ଉଠିଲେ ।

ଏ କଥା କିନ୍ତୁ ସାରା ଜିଲ୍ଲାରେ ପ୍ରଚାରିତ ହୋଇଗଲା । ସବୁ ଉତ୍ୟକ୍ତ ଜନତା ଶାନ୍ତ ହୋଇ ଉଠିଲେ । ତା'ପରେ ସବୁ ଠିକ୍‌ଠାକ୍ । ଜାଣିଛ ପିଲାଏ, ସେଦିନର ସେ ଯୁବକ ଜଣକ କିଏ ? ସେ ଅନ୍ୟ କେହି ନୁହେଁ- ଆମ ଭାରତର ପୂର୍ବତନ ରାଷ୍ଟ୍ରପତି କେ.ଆର. ନାରାୟଣନ୍ ।

କେରଳର କାଟାୟମ ଜିଲ୍ଲାର ଓଝାବୁର କୃଷିପ୍ରବଣ ଗ୍ରାମ । ସେଠାରେ ବିପ୍ରଚରଣ ନାରାୟଣନ ଏକ ସାଧାରଣ କୃଷକ ପରିବାର । କୃଷି ଥିଲା ତାଙ୍କ ପ୍ରଧାନ ବ୍ୟବସାୟ । ପର ଜମିକୁ ଚଷି ଯାହା ପାଉଥିଲେ ସେଥିରେ ସେ ଦୁଃଖ କଷ୍ଟେ ଚଳି ଯାଉଥିଲେ । ଅନେକ ସମୟରେ ବିପ୍ର ଚରଣ ନଡ଼ିଆକତା କାରଖାନାରେ କାମ କରୁଥିଲେ । ବିପ୍ର ଚରଣଙ୍କ ସ୍ତ୍ରୀ କୃପାଦେବୀ ଥିଲେ ଅତ୍ୟନ୍ତ ଧର୍ମପରାୟଣ । ଏହି ପରିବାରରେ ୧୯୨୧ ମସିହା ଫେବୃୟାରୀ ୪ ତାରିଖ ସରସ୍ୱତୀ ପୂଜାର ଶୁଭ ଅବସରରେ ନାରାୟଣନ ଜନ୍ମଗ୍ରହଣ କରିଥିଲେ ।

ଆଶ୍ଚର୍ଯ୍ୟର କଥା ସେହିଦିନ ରାତିରେ ଆକାଶରେ ଏକ ବିରାଟକାୟ ଉଲ୍‌କାପିଣ୍ଡର ଭଗ୍ନାବଶେଷ ବିପ୍ର ଚରଣଙ୍କ ଘର ଉପରେ ପଡ଼ି ଘରର କିଛି ଅଂଶ ନଷ୍ଟ କରି ପକାଇଥିଲା । ଅନେକ କହିଲେ ଏହା ଅଶୁଭ ବୋଲି । ହେଲେ ବିପ୍ର ଚରଣ ଜଣେ ବଡ଼ ଜ୍ୟୋତିଷକୁ ଡାକି ଏକଥା କହିଥିଲେ । ଜ୍ୟୋତିଷ ଜଣକ ଗଣନା କରି ବିପ୍ର ଚରଣଙ୍କୁ ଆନନ୍ଦରେ

କୁଣ୍ଡାଇ ଧରି କହିଲେ- ବିପ୍ର ଏବେ ତୁମ ଦୁଃଖର ଦିନ ସରିଗଲା । ସୁଃଖର ଆଲୁଅରେ ତୁମ ଘର ଆଲୋକିତ ହେବ । ତୁମ ଘରେ ଜନ୍ମ ନେଇଥିବା ପିଲା ସାଧାରଣ ପିଲା ନୁହେଁ । ସେ ମହାନ୍ ତେଜବାନ । ଦେଖିବ ସାରା ଭାରତରେ ସେ ପ୍ରତିନିଧିତ୍ୱ କରିବ ।

ଜ୍ୟୋତିଷଙ୍କର ଏତିକି କଥା କୃଷକ ବିପ୍ର ଚରଣଙ୍କୁ ପାଗଳ କରି ଦେଇଥିଲା । ତେଣୁ ଯେତେ ଅସୁବିଧା ଆସିଲେ ମଧ ସେ କେ.ଆର. ନାରାୟଣନ୍‌ଙ୍କୁ ପାଠ ପଢ଼ାଉଥିଲେ । ମାତ୍ର ୩ ବର୍ଷ ଦିନରୁ ନାରାୟଣନଙ୍କର ଲେଖିବା ଓ ପଢ଼ିବା ପ୍ରତି ଆଗ୍ରହ ଦେଖାଗଲା । ବହିଟିଏ ପାଇବା ମାତ୍ରେ ତାକୁ ସେ ସହଜରେ ଛାଡୁ ନଥିଲେ । ଘଣ୍ଟା ଘଣ୍ଟା ଧରି ତାକୁ ଖେଳାଇ ଚାଲୁଥିଲେ ।

୧୯୨୭ ମସିହାରେ ଓଝାବୁର ପ୍ରାଥମିକ ବିଦ୍ୟାଳୟରେ ନାରାୟଣନ ନାମ ଲେଖାଇଲେ । ତାଙ୍କ ପାଠ ପଢ଼ିବାର ଆଗ୍ରହ, ଏକାଗ୍ରତା ତାଙ୍କ ପରିବାରର ସବୁ ଅଭାବକୁ ଦୂର କରି ଦେଇଥିଲା । ସେ ସଦା ସର୍ବଦା ଶ୍ରେଣୀରେ ପ୍ରଥମ ହେଉଥିଲେ । ୧୯୩୫ ମସିହାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ମାଟ୍ରିକ ପାଶ୍ କଲେ । ସାଧାରଣ କୃଷକ ପରିବାରରେ ତାଙ୍କର ଜନ୍ମ । ପାଠ ପଢ଼ିବା ପାଇଁ ଏତେ ଅର୍ଥ ବା ଆସିବ କେଉଁଠୁ । କଲେଜ ଶିକ୍ଷା ପାଇଁ ଏକକାଳୀନ ଗୁଡ଼ିଏ ଟଙ୍କା ଯୋଗାଡ଼ କରିବା ବିପ୍ର ଚରଣଙ୍କ ପକ୍ଷରେ ସମ୍ଭବ ହେଲାନି । ତଥାପି ନାରାୟଣନ ଭାଙ୍ଗି ପଡ଼ି ନଥିଲେ । ଘରୋଇ ଭାବରେ ପାଠ ପଢ଼ି ଇଂରାଜୀରେ ଏମ୍.ଏ. ପାଶ୍ କଲେ । ଆଶ୍ଚର୍ଯ୍ୟର କଥା ସାରା ଭାରତରେ ଇଂରାଜୀ ସାହିତ୍ୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଅନେକ ଲୋକଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ ।

୧୯୪୧ରେ ଭାରତ ଛାଡ଼ ଆନ୍ଦୋଳନର ଉଗ୍ର ରୂପ ଓ ଗାନ୍ଧିଜୀଙ୍କ ସତ୍ୟାଗ୍ରହ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରି ଦେଶ ମାତୃକାର ସେବାରେ ନିଜକୁ ନିୟୋଜିତ କରିଥିଲେ । ମାତ୍ର ପାରିବାରିକ ସମସ୍ୟା ତାଙ୍କ ଗତିପଥକୁ ବଦଳାଇ ଦେଇଥିଲା । ସେ ବାଧହେଲେ ପରିବାର ପ୍ରତି କିଛି କର୍ତ୍ତବ୍ୟ କରିବାକୁ । ତେଣୁ ୧୯୪୩ ମସିହାରେ ଟ୍ରାଭାଙ୍କୋ ବିଶ୍ୱବିଦ୍ୟାଳୟରେ ଇଂରାଜୀ ଅଧାପକ ଭାବରେ ନିଜ ଚାକିରି ଜୀବନ ଆରମ୍ଭ କରିଥିଲେ । ସେଠାରେ ଅଧାପକ ଥିବାବେଳେ ଅନେକ ଗରିବ ଓ ମେଧାବୀ ପିଲାମାନଙ୍କୁ ବିନା ପଇସାରେ ପଢ଼ାଇଥିଲେ । କାରଣ ସେ ଅନୁଭବ କରିଥିଲେ ଗରିବ ଛାତ୍ରର ମାନସିକ ଅବସ୍ଥା । ଏଇଥିପାଇଁ ସମଗ୍ର ଛାତ୍ର ସମାଜରେ ସେ ଶ୍ରଦ୍ଧାଭାଜନ ହୋଇପାରିଲେ ।

ପିଲାଟି ଦିନରୁ ସାମ୍ବାଦିକତା ପ୍ରତି ନାରାୟଣନଙ୍କର ଥିଲା ଦୁର୍ବଳତା । ସେଇ ଦୁର୍ବଳତା ତାଙ୍କୁ ଏ ଅଧ୍ୟାପକ ଚାକିରିର ମୋହ ଭିତରେ ଆବଦ୍ଧ କରି ରଖିପାରି ନଥିଲା । ସମଗ୍ର ଛାତ୍ର ସମାଜ ଓ ସହଯୋଗୀମାନଙ୍କର ବାରଣ ସତ୍ୱେ ନାରାୟଣନ ୧୯୪୪ରେ ଅଧ୍ୟାପକ ଚାକିରି ଛାଡ଼ି ମାଡ୍ରାସର 'ହିନ୍ଦୁ' ସମ୍ବାଦପତ୍ରର ସଂପାଦକୀୟ ବିଭାଗରେ ଯୋଗଦେଲେ । ନାରାୟଣନଙ୍କ ସ୍ପଷ୍ଟବାଦୀତା ହିଁ ତାଙ୍କୁ ଖୁବ୍ କମ୍‌ଦିନରେ ସମ୍ବାଦପତ୍ର ଜଗତରେ ପ୍ରତିଷ୍ଠିତ କରାଇ ଏକ ପ୍ରଭାବଶାଳୀ ସାମ୍ବାଦିକ ଭାବରେ ପ୍ରତିଷ୍ଠା କରାଇଥିଲା । ୧୯୪୭ ଯେତେବେଳେ ଦେଶ ସ୍ୱାଧୀନତାର ମହାଯଜ୍ଞ ଜୋର୍‌ଦାର ଚାଲିଥାଏ, ସେତିକିବେଳେ ନାରାୟଣନ୍ ଟାଇମ୍ସ ଅଫ୍ ଇଣ୍ଡିଆର ରିପୋର୍ଟର ଭାବେ ଯୋଗଦେଲେ । ଇଂରେଜମାନଙ୍କ ବିରୋଧରେ ନିଚ୍ଛକ ସତ୍ୟ ସମ୍ବାଦମାନ ପ୍ରକାଶ କରାଇ ଦେଶରେ ଜନତାଙ୍କ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରିବାକୁ ମୁଖ୍ୟ ଭୂମିକା ନେଇଥିଲେ । ଏପରିକି ସଭା ସମିତିମାନଙ୍କରେ ଯୋଗଦେଇ ଇଂରେଜମାନଙ୍କ ବିରୋଧରେ ବିଷ ଉଦ୍‌ଗାରଣ କରି ଜନସଚେତନ ସୃଷ୍ଟି କରିଥିଲେ ।

୧୯୪୮ ଦେଶ ସ୍ୱାଧୀନତା ପାଇବା ପରେ ବମ୍ବେରୁ ପ୍ରକାଶିତ ହେଉଥିବା ସୋସିଆଲ ଓ୍ୱେଲଫେୟାର ଉଇକ୍ଲିର ଲଣ୍ଡନ ସମ୍ବାଦଦାତା ରୂପେ ଯୋଗ ଦେଇଥିଲେ । ସେଠାରେ ଅବସ୍ଥାନ କରିବା ସମୟରେ ନାରାୟଣନ ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକ୍ସରେ ଅର୍ଥଶାସ୍ତ୍ର ପଢ଼ିଥିଲେ । ସେଥିରେ ସ୍ୱର୍ଗତ ପ୍ରଫେସର ହୋରାଲ୍‌ଡ଼ ଲାସ୍କିଙ୍କର ପ୍ରିୟ ଛାତ୍ରମାନଙ୍କ ମଧ୍ୟରୁ ଅନ୍ୟତମ ।

ସାମ୍ବାଦିକ ହିସାବରେ ନାରାୟଣନ ଭାରତ ଓ ଭାରତ ବାହାରେ ଲୋକପ୍ରିୟ ହୋଇ ଉଠିଥିଲେ । ତାଙ୍କର ଅର୍ଥଶାସ୍ତ୍ର, ଇଂରାଜୀ, ସାହିତ୍ୟ ଉପରେ ଅନେକଗୁଡ଼ିଏ ଓଜନଦାର ଲେଖା ପୃଥିବୀର ବହୁ ସମ୍ବାଦପତ୍ରରେ ପ୍ରକାଶ ପାଇଲା । ଏହାଦ୍ୱାରା ବିଶ୍ୱ ପାଠକୀୟ ଦରବାରରେ ସେ ବେଶ୍ ପରିଚିତ ହୋଇ ଉଠିଲେ । ୧୯୪୯ ବେଳକୁ ନେହେରୁଙ୍କର ଦୃଷ୍ଟି ନାରାୟଣନଙ୍କ ଉପରେ ପଡ଼ିଲା ଓ ସେ ତାଙ୍କୁ ଭାରତୀୟ ବୈଦେଶିକ ସେବା ପାଇଁ ମନୋନୀତ କଲେ । ସେଥିରେ ବେଶ୍ ଆଦର୍ଶତାର ସହ କାର୍ଯ୍ୟ କରି ଲୋକପ୍ରିୟତା ଅର୍ଜନ କଲେ । ୧୯୬୩ରୁ ୧୯୬୪ ସେ ବିଦେଶ ପ୍ରଚାର ବିଭାଗ ଏବଂ ପରେ ଚୀନ ଡିଭିଜନର ନିର୍ଦ୍ଦେଶକ ହୋଇଥିଲେ । ଏ ସବୁ ପଦବୀରେ ତାଙ୍କ କାର୍ଯ୍ୟଦକ୍ଷତାର ପ୍ରମାଣ ପାଇବା ପରେ ତାଙ୍କୁ ପ୍ରଥମେ ଥାଇଲାଣ୍ଡ ପରେ ତୁର୍କୀ, ଚୀନ ଏବଂ ଆମେରିକାର ଭାରତର ରାଷ୍ଟ୍ରଦୂତ ରୂପେ ନିଯୁକ୍ତି ଦିଆଯାଇଥିଲା । ୧୯୭୮ରୁ ୧୯୮୦ ମସିହା ପର୍ଯ୍ୟନ୍ତ ଜବାହରଲାଲ

ନେହେରୁ ବିଶ୍ୱବିଦ୍ୟାଳୟର କୁଳପତି ରୂପରେ ରହି ବେଶ୍ ଦକ୍ଷତାର ସହ କାର୍ଯ୍ୟ କରିଥିଲେ । ଏହାପରେ ସେ ଭାରତର ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ସାମ୍ବାଦିକ ଭାବରେ ପରିଚିତ ହୋଇ ଉଠିଲେ ।

୧୯୮୪ ମସିହାରେ ପ୍ରଥମ ଥର ପାଇଁ ଲୋକସଭାକୁ ନିର୍ବାଚିତ ହେଲେ । ୧୯୮୫ରେ ରାଷ୍ଟ୍ରମନ୍ତ୍ରୀ ଭାବରେ ନିଯୁକ୍ତି ପାଇଲେ । (୧୯୮୭ରୁ ୧୯୯୨) ଭାରତର ଉପରାଷ୍ଟ୍ରପତି ଶଙ୍କର ଦୟାଲ ଶର୍ମାଙ୍କ ସମୟସୀମା ପୂରି ଯିବାରୁ ଉପରାଷ୍ଟ୍ରପତି ନିର୍ବାଚନ ୧୯୯୨ ଅଗଷ୍ଟରେ ଅନୁଷ୍ଠିତ ହେଲା । ସେଥିରେ କେ.ଆର. ନାରାୟଣନ ପ୍ରାର୍ଥୀ ହେଲେ । ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ସହଯୋଗରେ କେ.ଆର. ନାରାୟଣନ ନିର୍ବାଚନରେ ଜିତି ଉପରାଷ୍ଟ୍ରପତି ଭାବରେ ଶପଥ ନେଲେ । ନାରାୟଣନ ତାଙ୍କ ଜୀବନକାଳ ମଧ୍ୟରେ ଅଧ୍ୟାପକ, ସାମ୍ବାଦିକ, ବିଶ୍ୱବିଦ୍ୟାଳୟର କୁଳପତି, ସାଂସଦ, ସଭ୍ୟ, ମନ୍ତ୍ରୀ ବିଭିନ୍ନ ଭୂମିକାରେ ନିଜର କାର୍ଯ୍ୟ ସଫଳତାର ସହ ସଂପାଦନ କରିଛନ୍ତି । କଠିନ ପରିଶ୍ରମ, ବିଚକ୍ଷଣ ଧୀଶକ୍ତି ଯୋଗୁଁ ସେ ସଫଳତାର ଶୀର୍ଷରେ ପହଞ୍ଚି ପାରିଛନ୍ତି ।

ଏହାପରେ ଅନ୍ୟ ଏକ ସଫଳତା । ୧୯୯୭ରେ ଭାରତର ରାଷ୍ଟ୍ରପତି ଶଙ୍କର ଦୟାଲ ଶର୍ମାଙ୍କ କାର୍ଯ୍ୟକାଳ ସରିଯିବାରୁ କେ.ଆର. ନାରାୟଣନ ପୁନର୍ବାର ରାଷ୍ଟ୍ରପତି ନିର୍ବାଚନରେ ଭାଗନେଲେ । ତାଙ୍କ ଆଦର୍ଶ, ବ୍ୟକ୍ତିତ୍ୱ ପୁନରାଏ ତାଙ୍କୁ ରାଷ୍ଟ୍ରପତି ପଦରେ ଅଭିଷିକ୍ତ କରାଇଲା । ରାଷ୍ଟ୍ରପତି ହେବାପରେ ଦେଶର ବହୁ ଗୁରୁତ୍ୱପୂର୍ଣ୍ଣ ପଦବୀରେ ଅବତୀର୍ଣ୍ଣ ହେଲେ । ଅନେକ ସମସ୍ୟାର ସମାଧାନ କରି ଲୋକପ୍ରିୟ ହୋଇଉଠିଲେ । ୨୦୦୨ ଜୁଲାଇରେ ରାଷ୍ଟ୍ରପତି ପଦରୁ ଅବସର ନେଇ ସେ ନିଜ ଗ୍ରାମ ଓଝାବୁରରେ ଅବସ୍ଥାନ କରୁଛନ୍ତି ।

ନାରାୟଣନ ୨ଟି କନ୍ୟାର ଜନକ ଓ ତାଙ୍କ ପତ୍ନୀ ଉଷା କେରଳୀ ସାହିତ୍ୟର ଜଣେ ପ୍ରତିଷ୍ଠିତ ପ୍ରତିଭାବାନ କବି ।

❖❖





# ଡକ୍ଟର ଅବଦୁଲ କଲାମ

(କାର୍ଯ୍ୟକାଳ - ୨୦୦୨ ଜୁଲାଇ ୨୫ରୁ ଏଯାବତ୍)

ମୁସ୍‌ଲିମ ପିଲାଟିଏ ହେଲେ କ'ଣ ହେବ, ହିନ୍ଦୁ ରୀତି ନୀତି, ଚାଲି ଚଳଣ ଓ କାଇଦା କଟକଣାକୁ କାହିଁକି ସେ ଭାରି ପସନ୍ଦ କରେ । ସେଇଥିପାଇଁ ତା'ର ଅତି ନିଜର ସାଙ୍ଗମାନେ ହିଁ ହିନ୍ଦୁ ବ୍ରାହ୍ମଣ ଘରର ପିଲା ।

ସ୍କୁଲରେ ପଢ଼ିବାକୁ ଗଲାବେଳେ ମୁସ୍‌ଲିମ୍ ପିଲାଟିର ୩ ଜଣ ଅତି ଅନ୍ତରଙ୍ଗ ବନ୍ଧୁ ଥିଲେ । ସେ ୩ ଜଣ ଯାକ ହିଁ ହିନ୍ଦୁ ପରିବାରର । ସେମାନଙ୍କ ମଧ୍ୟରୁ ରମଣାଧା ଶାସ୍ତ୍ରୀ ଥିଲେ ରାମେଶ୍ୱର ମନ୍ଦିରର ମୁଖ୍ୟ ପୁରୋହିତ ଲକ୍ଷ୍ମଣ ଶାସ୍ତ୍ରୀଙ୍କର ପୁଅ । ଚାରିଜଣ ସାଙ୍ଗ ପରସ୍ପରକୁ ଟିକିଏ ନ ଦେଖିଲେ ପାଗଳ ହୋଇଯାଉଥିଲେ । ସାଥୀହୋଇ ଶ୍ରେଣୀରେ ବସୁଥିଲେ । କିନ୍ତୁ ମୁସ୍‌ଲିମ୍ ପିଲାଟି ନିଜର ପାରମ୍ପରିକ ପୋଷାକ ପିନ୍ଧି ଶ୍ରେଣୀକୁ ଯାଉଥିଲା ।

ଥରେ ଜଣେ ନୂଆ ଶିକ୍ଷକ ବିଦ୍ୟାଳୟକୁ ଆସିଥାନ୍ତି । ହେଲେ ଶ୍ରେଣୀ ଗୃହରେ ଜଣେ ବ୍ରାହ୍ମଣ ପିଲା ସହ ମୁସ୍‌ଲିମ୍ ପିଲାଟି ଏକାଠି ବସିବା ଦେଖି ତାଙ୍କୁ କାହିଁକି ଅଡୁଆ ଅଡୁଆ ଲାଗିଲା । ସେ ସାଥେ ସାଥେ ମୁସ୍‌ଲିମ୍ ପିଲାକୁ ପଛ ବେଞ୍ଚକୁ ଉଠିଯିବାକୁ ଆଦେଶ ଦେଲେ । ଏହି ଆଦେଶ ଶୁଣି ମୁସ୍‌ଲିମ୍ ପିଲାଟି ଖୁବ୍‌ଜୋର୍‌ରେ କାନ୍ଦି ଉଠିଲା । ନୂଆ ଗୁରୁଜୀଙ୍କ କଥା ନ ମାନିଲେ ଖରାପ ହେବ । ତେଣୁ କାନ୍ଦି କାନ୍ଦି ସେ ପଛ ବେଞ୍ଚକୁ ଉଠିଗଲା । ଏଥିରେ ରମଣାଧା ଭାରି ଦୁଃଖିତ ହେଲେ । କାହାକୁ କିଛି କହିପାରି ନଥିଲେ, ହେଲେ ଘରକୁ ଯାଇ ବାପାଙ୍କୁ ସବୁ କଥା କହିଥିଲେ ।

ଲକ୍ଷ୍ମଣ ଶାସ୍ତ୍ରୀ ସେଦିନ ସଞ୍ଜରେ ନୂଆ ଶିକ୍ଷକଙ୍କୁ ଘରକୁ ଡକାଇ ପଠାଇଲେ ।

ଦୁଇ ସାଥୀଙ୍କ ଉପସ୍ଥିତିରେ ଶିକ୍ଷକଙ୍କୁ କହିଲେ- 'ଦେଖନ୍ତୁ ଗୁରୁଜୀ, ଆପଣ ଜଣେ ଆଦର୍ଶ ଶିକ୍ଷକ ହୋଇ ଏପରି ଜାତି ସଂପ୍ରଦାୟର ବିଷ ମଞ୍ଜି ଏ କୋମଳମତି ପିଲାମାନଙ୍କ ମୁଣ୍ଡରେ କାହିଁକି ପୂରାଉଛନ୍ତି ? ପିଲା ଦୁହିଁଙ୍କ ମଧ୍ୟରେ ଯେଉଁ ବନ୍ଧୁତା ଗଢ଼ି ଉଠିଛି ତାକୁ କ'ଣ ଏ ଜାତି ପ୍ରଥାର ପାଚେରୀ ପକାଇ ଭାଙ୍ଗିଦେବେ ।' ଏପରି ଭୁଲ ଚିନ୍ତାଧାରା ଆଉ କେବେ ଏ ପିଲାଙ୍କ ମୁଣ୍ଡରେ ପୂରାଇବେ ନାହିଁ । ବିଚରା ଶିକ୍ଷକ ଜଣକ କରିବେ କ'ଣ, କେବଳ ଚୁପ୍‌ଚାପ୍ ବସି ରହିଲେ ।

ତା'ପରଠାରୁ ରମଣାଧା ଠାରୁ ସେ ମୁସ୍‌ଲିମ୍ ପିଲାକୁ କେହି ବି ଅଲଗା କରିପାରି ନାହାନ୍ତି । ଏପରିକି ଆଜିପର୍ଯ୍ୟନ୍ତ ମଧ୍ୟ ।

ଜାଣିଛ ପିଲାଏ, ସେଦିନର ସେ ମୁସ୍‌ଲିମ୍ ପିଲାଟି କିଏ ? ସେ ଆଉ କେହି ନୁହଁନ୍ତି, ଆମ ଭାରତର ବର୍ତ୍ତମାନର ରାଷ୍ଟ୍ରପତି ଡକ୍ଟର ଅବୁଲ ଫକୀର ଜୁଇନୁଲାବୁଦ୍ଦିନ୍ ଅବଦୁଲ କଲାମ ।

ପୂର୍ବତନ ମାଡ୍ରାସ ରାଜ୍ୟରେ ରାମେଶ୍ୱରମ୍ ସହରରେ ଅନେକ ତାମିଲ ପରିବାର ବାସ କରୁଥିଲେ । ସେଇମାନଙ୍କ ମଧ୍ୟରୁ ଜୁଇନୁଲାବୁଦ୍ଦିନ୍ ଅନ୍ୟତମ । ସେ ଶିକ୍ଷିତ ନଥିଲେ ସତ, ହେଲେ ଭାରି ବିବେକୀ ଓ ସତ୍ୟନିଷ୍ଠା ଉଦାର ହୃଦୟବାନ ଥିଲେ । ଡଙ୍ଗା ବାହି ଜୀବିକା ନିର୍ବାହ କରୁଥିଲେ ।

ଜୁଇନୁଲ୍ଲାବୁଦ୍ଦିନଙ୍କ ସ୍ତ୍ରୀ ଆସିଆମ୍ମା ଥିଲେ ଆଦର୍ଶ ଗୃହିଣୀ ।

ସେଦିନ ଥାଏ ୧୯୩୧ ମସିହା ଜୁଲାଇ ୧୫ ତାରିଖ । ଭାରତ ସ୍ୱାଧୀନତା ଆନ୍ଦୋଳନ ଖୁବ୍ ଜୋର୍‌ଦାର ଚାଲିଥାଏ । ସେହି ପରିବେଶରେ ଆସିଆମ୍ମାଙ୍କ କୋଳମଣ୍ଡନ କରି ପୁଅଟିଏ ଜନ୍ମ ହେଲା । ଆଉ ସେଦିନର କଅଁଳା ପୁଅଟିର ଚାହାଣୀ କହିଦେଉଥିଲା ପୁଅଟି ଦିନେ ସାରା ଭାରତରେ ନାଁ ରଖିବ । ପୁଅଟିକୁ ଦେଖି ଦେଖି ଖୁସିରେ ଆତ୍ମହରା ହୋଇଯାଉଥିଲେ ବନ୍ଧୁ ଲକ୍ଷ୍ମଣ ଶାସ୍ତ୍ରୀ । ସେଦିନ ସେ ପୁଅଟିକୁ ଆଶୀର୍ବାଦ କରି କହିଲେ- ଜଇନୁଲ ତୁମ ପୁଅର ଭବିଷ୍ୟତ ଉଜ୍ଜ୍ୱଳ । ତାକୁ ପାଠପଢ଼ାରୁ କେବେ ବଞ୍ଚିତ କରିବ ନାହିଁ । ଜୁଇନୁଲ ହସିଦେଇ କହିଥିଲେ- ସବୁ ସେଇ ଆଲ୍ଲାଙ୍କ ଇଚ୍ଛା ।

ତିନି ପୁରୁଷର ନାଁକୁ ନେଇ ସେଦିନ ପିଲାଟିର ନାମକରଣ କରାଗଲା । ଜୁଇନୁଲ ଜେଜେଙ୍କର ନାମ ଥିଲା ଅବୁଲ, ବାପାଙ୍କର ନାଁ ଫକୀର, ତେଣୁ ନିଜ ନାଁ ଜୁଇନୁଲକୁ ମିଶାଇ, ପୁଅର ନାଁ ରଖିଲେ- ''ଆବୁଲ ଫକୀର ଜୁଇନଲାବୁଦ୍ଦିନ ଅବଦୁଲ କଲାମ ।''

ସାଥୀ ମେଳରେ କେବଳ 'ଅବୁଲ' ନାମରେ ସେ ପରିଚିତ । ହେଲେ ସାରା ଭାରତରେ ସେ ''ଅବଦୁଲ କଲାମ'' ନାମରେ ପରିଚିତ ।

ରାମେଶ୍ୱରମ୍‌ର ଏଲିମେଣ୍ଟାରୀ ସ୍କୁଲରେ ଅବଦୁଲ କଲାମଙ୍କର ନାମ ଲେଖାଗଲା । ଜାତିପ୍ରଥା, ବାଛ ବିଚାର ସେତେବେଳେ କଡ଼ାକଡ଼ି ଭାବରେ ପ୍ରଚଳିତ ଥିଲା । ପଡ଼ୋଶୀ ଜଲାଲୁଦ୍ଦିନ ତାଙ୍କୁ ସଂସ୍କାରବାଦୀ ହେବାକୁ ପରାମର୍ଶ ଦେଉଥିଲେ । ପରେ ଏହି ଜଲ୍ଲାଲୁଦିନ କଲାମଙ୍କ ଭଉଣୀକୁ ବିବାହ କରିଥିଲେ । ପାଠ ପଢ଼ିବା ପାଇଁ ତାଙ୍କ ପାଖରେ ଉପଯୁକ୍ତ ପରିବେଶ ନଥିଲା, ଏପରିକୁ ବହିପତ୍ର ମଧ ମିଳୁନଥିଲା । ହେଲେ ତାଙ୍କ ଗ୍ରାମର ଏମ୍.ପି.ଆର. ମଣିକାମ୍ ଅନେକଗୁଡ଼ିଏ ବହିପତ୍ର ରଖିଥିଲେ । କଲାମ ତାଙ୍କରି ଘରକୁ ଯାଇ ପଢ଼ାପଢ଼ି କରୁଥିଲେ । ତାଙ୍କ ପାଠପଢ଼ା ଦେଖି ଶିକ୍ଷକମାନେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ । ମାତ୍ର ଆଠ ବର୍ଷ ବୟସରେ ତାଙ୍କର ସଂପର୍କୀୟ ଭାଇ ଶ୍ୟାମସୁଦ୍ଦିନଙ୍କ ପାଖରେ ପେପର ହକର ରୂପେ କାମ କରି କିଛି ରୋଜଗାର କରୁଥିଲେ । ନିଜେ ରୋଜଗାର କରିବାର ଯେଉଁ ଆନନ୍ଦ ମିଳେ, କଲାମ ପିଲାଟି ଦିନରୁ ଅନୁଭବ କରିଥିଲେ । ରାମେଶ୍ୱରମ୍‌ର ବିଜ୍ଞାନ ଶିକ୍ଷକ ସୁବ୍ରମଣ୍ୟମ ଆୟାର ଥିଲେ ନୈଷ୍ଠିକ ବ୍ରାହ୍ମଣ । ମାତ୍ର ଜାତିପ୍ରଥାକୁ ସେ ମାନୁନଥିଲେ । କଲାମଙ୍କୁ ସେ ଭାରି ଆଦର କରୁଥିଲେ । ଥରେ କଲାମଙ୍କୁ ଆୟାର ଘରକୁ ଡାକିଲେ । ଏଥିରେ ଆୟାରଙ୍କ ସ୍ତ୍ରୀ ଭୀଷଣ ରାଗିଗଲେ । ଏବଂ ରୋଷେଇଘରେ ଖାଇବାକୁ ଦେବାକୁ ସିଧା ସିଧା ମନାକରି ଦେଇଥିଲେ । ହେଲେ ଆୟାର ଏଥିରେ ଟିକିଏ ବି ଦୁଃଖ କରି ନଥିଲେ । ବରଂ ନିଜ ହାତରେ ରୋଷେଇ କରି କଲାମଙ୍କୁ ଖୁଆଇଥିଲେ । ଏବଂ ସ୍ତ୍ରୀଙ୍କ ଉପସ୍ଥିତିରେ ପୁଣି ଆସନ୍ତା ସପ୍ତାହକୁ ଆସିବାକୁ କଲାମଙ୍କୁ ନିମନ୍ତ୍ରଣ ଜଣାଇ କହିଲେ- ''ଦେଖ କଲାମ ଆମକୁ ଏ ସାମାଜିକ ଅନ୍ଧବିଶ୍ୱାସର ପାଚେରୀକୁ ଭାଙ୍ଗିଦେବାକୁ ହେବ । ଏଥିପାଇଁ ଅବଶ୍ୟ ଟିକେ କଷ୍ଟ କରିବାକୁ ହେବ । ତା'ବୋଲି କ'ଣ ଆମେ ହଟିଯିବା ?''

ଶିକ୍ଷକଙ୍କ ଅନୁରୋଧରେ କଲାମ ପରବର୍ତ୍ତୀ ସପ୍ତାହରେ ପୁଣି ତାଙ୍କ ଘରକୁ ଆସିଲେ । ଆଶ୍ଚର୍ଯ୍ୟ, ଗୁରୁଜୀଙ୍କ ସ୍ତ୍ରୀ ତାଙ୍କୁ ଆଦରରେ ରୋଷେଇ ଘରକୁ ଡାକିନେଇ ସ୍ନେହରେ ଖାଇବାକୁ ଦେଲେ । ଗୁରୁମାଙ୍କ ଏ ପରିବର୍ତ୍ତନରେ କଲାମ ଆନନ୍ଦିତ ହୋଇ ଉଠିଲେ । ସେଇଠି ଗୁରୁଜୀ ତାଙ୍କୁ କହିଥିଲେ-

- ''ମୁଁ ତୁମକୁ ଏଭଳି ଭାବରେ ଗଢ଼ିବାକୁ ଚାହୁଁଚି, ଯାହାଫଳରେ ବଡ଼ ବଡ଼ ସହରରେ ଉଚ୍ଚଶିକ୍ଷିତମାନଙ୍କ ସହ ତୁମେ ସମକକ୍ଷ ହୋଇପାରିବ ।'' -

ତାହାହିଁ ହେଲା । ସେ ଗୁରୁଜୀଙ୍କ ଆଶୀର୍ବାଦରୁ କଲାମ ସଫଳତାର ସିଡ଼ି ଚଢ଼ିବାକୁ ଲାଗିଲେ । ଗାଁ ସ୍କୁଲରୁ ପାଠପଢ଼ା ଶେଷକରି ରମାନାଥପୁରମ୍‌ରେ ଥିବା ସ୍ୱାର୍ଟ ହାଇସ୍କୁଲରେ ନାମ ଲେଖାଇଲେ । ସେଠାରେ ବିଜ୍ଞାନ ଶିକ୍ଷକ ଆୟାଦୁରାଇ ସୋଲୋମଙ୍କ ସହ ମିଶିବା ଫଳରେ ଗଣିତ ଓ ବିଜ୍ଞାନ ପ୍ରତି ତାଙ୍କର ଆଗ୍ରହ ସୃଷ୍ଟି ହେଲା । କଲାମଙ୍କ ଆଗ୍ରହ ଦେଖି ସେଦିନ ସୋଲୋମ କହିଥିଲେ-

''ଦେଖ କଲାମ ଜୀବନରେ ସଫଳତା ପାଇବାକୁ ହେଲେ ଇଚ୍ଛାଶକ୍ତି, ଆତ୍ମବିଶ୍ୱାସ ଓ ଆଶା ଏଇ ତିନୋଟି ଶକ୍ତିକୁ ଆୟତ୍ତ କରିବାକୁ ହେବ ।''

କଲାମ ପଢ଼ିବା ବେଳେ ଆକାଶରେ ଉଡୁଥିବା ପକ୍ଷୀମାନଙ୍କ ଗତିବିଧିକୁ ନିରୀକ୍ଷଣ କରି କରି ଆକାଶରେ ଉଡ଼ିବାର ସ୍ୱପ୍ନ ଦେଖୁଥିଲେ । ଶ୍ରେଣୀରେ ଗଣିତରେ ୧୦୦ରୁ ୧୦୦ ନମ୍ବର ରଖି ସେଦିନ ସବୁ ଶିକ୍ଷକମାନଙ୍କୁ ବିସ୍ମିତ କରାଇ ଦେଇଥିଲେ । ସ୍ୱାର୍ଟ ହାଇସ୍କୁଲରୁ ପାଠପଢ଼ା ଶେଷ ହେବାପରେ ତିରୁଚିଲାପଲ୍ଲୀସ୍ଥିତ ସେଣ୍ଟ ଜୋସେଫ କଲେଜରେ ନାଁ ଲେଖାଇଲେ । ଏଇଠି ଫାଦର ଟି.ଏନ୍. ସିକୁଇରାଙ୍କ ସହ ତାଙ୍କର ପରିଚୟ ହେଲା । ସେଇଦିନଠାରୁ ସେ ହେଲେ କଲାମଙ୍କର ତତ୍ତ୍ୱାବଧାରକ । ପ୍ରଫେସର ଥୋଥାଦ୍ରି ଆୟାଙ୍ଗାର ଓ ପ୍ରଫେସର ସୂର୍ଯ୍ୟନାରାୟଣ ଶାସ୍ତ୍ରୀଙ୍କ ସହ ପରିଚିତ ହେଲା । ସେଇମାନଙ୍କ ଆଶୀର୍ବାଦ ଓ ପ୍ରେରଣା ପାଇ କଲାମ ଜୀବନଯାତ୍ରାରେ ଆଗେଇ ଚାଲିଲେ । ସେଇଠି ସେ ମର୍ମେ ମର୍ମେ ଅନୁଭବ କଲେ ପ୍ରତ୍ୟେକ ଦ୍ରବ୍ୟର ଅଣୁରେ ପରମାଣୁ ରହିଛି । ଏହାମଧ୍ୟରେ ଥିବା ବିଦ୍ୟୁତ୍ ଶକ୍ତି ହିଁ ପରମାଣୁ ଗୁଡ଼ିକୁ ଏକାଠି ଧରି ରଖିଛି । ସେଣ୍ଟ ଜୋସେଫ କଲେଜରୁ ବି.ଏସ୍.ସି. ପାଶ୍ କଲେ । ବିଜ୍ଞାନ ପ୍ରତି ପ୍ରଗାଢ଼ ମୋହ, ମହାକାଶ ପ୍ରତି ପ୍ରଗାଢ଼ ଅନୁରାଗ ତାଙ୍କ ପାଖରେ ସଜାଗ ହୋଇଥାଏ । ଆକାଶରେ ଡେଣାମେଲି ଉଡ଼ିବାର ସ୍ୱପ୍ନ ତାଙ୍କୁ ଇଞ୍ଜିନିୟରିଂ ପଢ଼ିବାକୁ ପ୍ରବର୍ତ୍ତାଇଲା । ଏବଂ ମାଡ୍ରାସ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଟେକ୍‌ନୋଲୋଜିରେ ପଢ଼ିବା ପାଇଁ ଯୋଗ୍ୟ ବିବେଚିତ ହେଲେ । ମାତ୍ର ସେଠାରେ ପଢ଼ିବାକୁ ହେଲେ ଏତେ ଟଙ୍କା ଆସିବ କେଉଁଠୁ ? ଠିକ୍ ଏତିକିବେଳେ ତାଙ୍କ ଭଉଣୀ ଜୋହରା ହାତରୁ କାଚ ଓ ବେକରୁ ସୁନା ଚେନ୍‌କୁ ବନ୍ଧକ ଦେଇ ଟଙ୍କା ଆଣି ଦେଲେ । ମାଡ୍ରାସ ଗଲାବେଳେ କଲାମ କାନ୍ଦି କାନ୍ଦି ଭଉଣୀକୁ କହିଥିଲେ- ଜୀବନରେ ତୋ ଋଣ ମୁଁ କେବେ ସୁଝିପାରିବି ନାହିଁ । ମୋ ରୋଜଗାରର ପ୍ରଥମ ଅର୍ଥରେ ତୋ ହାର ଓ ଚୂଡ଼ିକୁ ମୁକୁଳାଇବି ।

ମାନ୍ଦ୍ରାଜ ଇଞ୍ଜିନିୟରିଂ କଲେଜରେ କଲାମ ସବୁ ଅଧ୍ୟାପକମାନଙ୍କର ପ୍ରିୟପାତ୍ର ହୋଇ ଉଠିଲେ ଓ ଖୁବ୍ କମ୍‌ଦିନରେ ହିଁ ସେ ଆକାଶମାର୍ଗର ଯାନଗୁଡ଼ିକର ନିର୍ମାଣ କୌଶଳର କଳାକୁ ଅକ୍ତିଆର କରିନେଲେ । ମାନ୍ଦ୍ରାଜ କଲେଜରୁ ପାଠ୍ୟକ୍ରମ ଶେଷ ହେବା ପରେ କଲେଜର ସମସ୍ତ ଅଧ୍ୟାପକମାନେ କଲାମଙ୍କ ସହ ଏକ ଫଟୋ ଉଠାଇଲେ । ଏହାର କାରଣ କ'ଣ ବୋଲି କଲାମ ପଚାରିବାରୁ ଅଧ୍ୟକ୍ଷ ହସି ହସି କହିଥିଲେ,

ମୁଁ ଜାଣିଛି ତୁମେ ଭବିଷ୍ୟତରେ ଜଣେ ବଡ଼ ମଣିଷ ହେବ । ତେଣୁ ତୁମ ସାଙ୍ଗରେ ଫଟୋଟିଏ ଥିଲେ ଆମମାନଙ୍କର ସୁନାମ ବଢ଼ିବ ।

ଇଞ୍ଜିନିୟରିଂ ପାଶ୍ କରିବା ପରେ କଲାମ ଚାକିରିରୁ ଏକ ସାକ୍ଷାତକାରର ସାମ୍ନା କରି ଫେରୁଥାନ୍ତି, ହଠାତ୍ ସ୍ୱାମୀ ଶିବାନନ୍ଦଙ୍କ ସହ ତାଙ୍କର ଦେଖାହେଲା । ମୁସଲମାନ ହେଲେ ବି କଲାମ ହିନ୍ଦୁ ରୀତି ନୀତିକୁ ସମ୍ମାନ ଦିଅନ୍ତି । ତେଣୁ ସ୍ୱାମୀଙ୍କୁ ପ୍ରଣାମ କରି ତାଙ୍କ ମନର କଥା କହିଲେ ।

ସ୍ୱାମୀଜୀ ହସି ହସି କହିଲେ- ''ତୁମ ଭାଗ୍ୟକୁ ସ୍ୱୀକାର କର ଓ ଜୀବନରେ ଆଗେଇ ଚାଲ, ବିଫଳ ହୋଇଛ, ଏକଥା ପାଶୋରିଦିଅ । ପ୍ରକୃତ ଲକ୍ଷ୍ୟକୁ ଖୋଜ, ଇଶ୍ୱରଙ୍କ ଇଚ୍ଛା ପାଖରେ ତୁମେ ଶରଣ ନିଅ, ଦେଖିବ ତୁମେ ନିଶ୍ଚିତ ଆକାଶରେ ଉଡ଼ିବ ।''

ଶିବାନନ୍ଦଙ୍କଠାରୁ ଆଶୀର୍ବାଦ ପାଇ କଲାମ ଘରକୁ ଫେରିଲେ । ମାସକୁ ମାତ୍ର ୨୫୦ ଟଙ୍କା ଦରମାରେ ପ୍ରତିରକ୍ଷା ବିଭାଗରେ ଯୋଗଦେଲେ । ସେ ସିନା ଆକାଶରେ ଉଡ଼ିପାରିଲେ ନାହିଁ, ହେଲେ ଉଡ଼ିବାକୁ ପାଥେୟ ଯୋଗାଇଲେ । ସେ ଆଉ ପଛକୁ ଫେରି ଚାହିଁନାହାନ୍ତି । ଭାରତର ବିଭିନ୍ନ ସ୍ଥାନରେ ଥିବା ମହାକାଶ ଗବେଷଣା ଓ ପ୍ରୟୋଗଶାଳାରେ କାମ କରିବାର ସୁଯୋଗ ପାଇଲେ । ତାଙ୍କର ପ୍ରଥମ ସଫଳତା ହିଁ ୧୯୮୦ରେ ପ୍ରତିପାଦିତ ହୋଇଥିଲା । ଯେତେବେଳେ ତତ୍କାଳୀନ ପ୍ରତିରକ୍ଷା ମନ୍ତ୍ରୀଙ୍କୁ ନେଇ ଆକାଶରେ ଦୁଇଘେରା ବୁଲି ଆସିଥିଲେ ।

କଲାମଙ୍କ ପ୍ରତିଭାର ସୂଚନା ପାଇ ସାରାଭାଇ, କଲାମଙ୍କୁ ତାଙ୍କ ଦଳରେ ସାମିଲ କଲେ । ଏବଂ ବିଷୁବମଣ୍ଡଳୀୟ ରକେଟ ଉତ୍‌କ୍ଷେପଣ କେନ୍ଦ୍ରରେ ତାଙ୍କୁ ନିଯୁକ୍ତି ଦେଲେ । ଏ ସଂପର୍କରେ ତାଙ୍କୁ ଅଧିକ ଜ୍ଞାନ ଆହରଣ ପାଇଁ କେନ୍ଦ୍ର ଯୁକ୍ତରାଷ୍ଟ୍ର ଆମେରିକାର 'ନାସା' ସଂସ୍ଥାକୁ ପଠାଇଲେ । ସେଠାରେ କଲାମ ୬ ମାସ ରହିଥିଲେ । ଆମେରିକାରୁ ଫେରିବା ପରେ ତାଙ୍କ ବିବାହ ଠିକ୍ ହେଲା । ଠିକ୍ ସେତିକିବେଳେ ତାଙ୍କ ଭାଇଙ୍କ ଦେହ ହଠାତ୍

ଖରାପ ହୋଇପଡ଼ିଲା । ଭାଇଙ୍କୁ ଭଲ କରିବାକୁ ଯାଇ ବିବାହ ତିଥି ଗଡ଼ିଗଲା । ଗଲା ସେବେଠାରୁ ସେ ଆଉ ବିବାହ କଥା ଚିନ୍ତା କରିନାହାନ୍ତି ।

କଲାମଙ୍କ କାର୍ଯ୍ୟଦକ୍ଷତା ସାରଭାଇଙ୍କୁ ପାଗଳ କରିଦେଲା । ସେଇଥିପାଇଁ କଲାମଙ୍କୁ ସାରଭାଇ ପାଖକୁ ନେଇଆସିଲେ । ସମୟ ଆସିଲା କଲାମ ଜ୍ଞାନ କୌଶଳ ସାରା ପୃଥିବୀକୁ ଆଶ୍ଚର୍ଯ୍ୟ କରିଦେଲା । ଉପଗ୍ରହ ଉତ୍କ୍ଷେପଣ ପାଇଁ ସାର୍‌ଭାଇ ଏକ ଦଳ ଗଠନ କଲେ । ଏ ଦଳର ମୁଖ୍ୟ ଭାବରେ ସେ କଲାମଙ୍କୁ ନେଇଥିଲେ । ଏବଂ ଏସ୍.ଏଲ୍.ଭି. ପ୍ରକଳ୍ପ ସହ ଭାରତକୁ ଆଣବିକ ଶକ୍ତିକ୍ଷମ କରିବାକୁ କଲାମ ଗବେଷଣା ଚଳାଇଥାନ୍ତି । ଏହି ସମୟରେ ତାଙ୍କ ଭିଣୋଇ ସବୁଦିନ ପାଇଁ ଆରପାରିକୁ ଚାଲିଗଲେ । ବିଜ୍ଞାନ ଓ କାରିଗରୀ ରକେଟ ନିର୍ମାଣରେ ଦେଶପାଇଁ ସେ ନିଜକୁ ଏମିତି ହଜାଇଦେଲେ ଯେ, ଭିଣୋଇର ଦୁଃଖ ତାଙ୍କ ମାନସପଟକୁ ଦୋହଲାଇ ପାରିନଥିଲା । ଭିଣୋଇ ପରେ ପରେ ତାଙ୍କ ମାଆ ମଧ ତାଙ୍କୁ ଛାଡ଼ି ଚାଲିଗଲେ । ପ୍ରିୟଜନମାନଙ୍କୁ ହରାଇ କଲାମ ଦୁନିଆରେ ଏକୁଟିଆ ହୋଇଗଲେ । ଏସ୍.ଏଲ.ଭି. କାମରେ ନିଜକୁ ପୂରାମାତ୍ରାରେ ହଜାଇଦେଲେ । ୧୯୮୦ ଜୁଲାଇ ୧୮ ସକାଳ ୮ଟା ୩୦ ମିନିଟ୍ ଏସ୍.ଏଲ.ଭି.-୩ ସଫଳତାର ସହ ଆକାଶ ମାର୍ଗରେ ଉଡ଼ିପାରିଲା । ସେଦିନ କଲାମ ଆନନ୍ଦରେ ଆତ୍ମହରା ହୋଇପଡ଼ିଲେ । ଇସ୍ରୋ ଅଧକ୍ଷ ସତୀଶ ଧାବନ ତାଙ୍କୁ ଅଭିନନ୍ଦନ ଦେଇ କୁଣ୍ଢାଇ ପକାଇଲେ । ହେଲେ ଏତେବଡ଼ ଖୁସି ପାଇଁ ତାଙ୍କ ପାଖରେ ଆତ୍ମୀୟ ବୋଲି କେହିଜଣେ ନଥିଲେ ।

ଏ ସଫଳତା ପରେ ପରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି କଲାମଙ୍କୁ ଡକାଇ ପଠାଇଲେ । ବିଜ୍ଞାନ ଓ ଗବେଷଣାରେ ବୁଡ଼ି ରହି ଭଲ ପୋଷାକଟିଏ ମଧ ସେ କରିପାରି ନଥିଲେ । ତେଣୁ ପ୍ରଧାନମନ୍ତ୍ରୀଙ୍କୁ ଦେଖା କରିବାକୁ ହେଲେ ଭଲ ପୋଷାକଟିଏ ନାହିଁ, ସେଥିପାଇଁ ସେ ଇନ୍ଦିରା ଗାନ୍ଧିଙ୍କୁ ସାକ୍ଷାତ କରିବାକୁ ପସନ୍ଦ କଲେନାହିଁ । କଲାମଙ୍କ ମନର କଥା ପ୍ରଫେସର ଧାବନ ଜାଣିପାରିଲେ ଓ ହସି ହସି କହିଲେ- "କଲାମ, ଆରେ ତୁମେ ଯେଉଁ ସଫଳତାର ପୋଷାକ ପିନ୍ଧିଛ, ତାହା ତ ଯଥେଷ୍ଟ । ଆଉ ଏ ସାଧାରଣ ପୋଷାକରୁ ମିଳିବ ବା କ'ଣ ?"

ଏହାର ଠିକ୍ ବର୍ଷକ ପରେ କଲାମ 'ପଦ୍ମଭୂଷଣ' ସମ୍ମାନରେ ସମ୍ମାନିତ ହେଲେ ।

କଲାମଙ୍କ ସ୍ୱପ୍ନ ସଫଳ ରୂପାୟନ ନେଲା । କେତେକ ସହଯୋଗୀମାନଙ୍କୁ ନେଇ

ସ୍ୱଦେଶ ଜ୍ଞାନ କୌଶଳକୁ ପୁଞ୍ଜି କରି ନିଜ ଲକ୍ଷ୍ୟ ପଥରେ ଆଗେଇ ଚାଲିଲେ । ୧୯୮୪ ଜୁନ ୨୬ରେ ପ୍ରାରମ୍ଭିକ କ୍ଷେପଣାସ୍ତ୍ର 'ଡେଭିଲ୍'ର ସଫଳ ପରୀକ୍ଷଣ କରାଗଲା । ଏହି ପରୀକ୍ଷଣରେ ଇନ୍ଦିରା ଗାନ୍ଧି ଖୁସି ହୋଇ କହିଥିଲେ- 'ସାବାସ୍ କଲାମ !' ହେଲେ ପୃଥ୍ୱୀ କ୍ଷେପଣାସ୍ତ୍ର କେବେ ପରୀକ୍ଷା ହେବ ? ଇନ୍ଦିରାଙ୍କ ପ୍ରଶ୍ନର ଉତ୍ତର ଦେଇ କଲାମ କହିଲେ, ୧୯୮୭ ଜୁନ ମାସରେ ହେଲେ ଦୁଃଖର କଥା ପୃଥ୍ୱୀ କ୍ଷେପଣାସ୍ତ୍ର ପରୀକ୍ଷା ବେଳକୁ ଇନ୍ଦିରା ଗାନ୍ଧି ଆଉ ନଥିଲେ । କଲାମଙ୍କ ସ୍ୱପ୍ନ ଥିଲା ଅଗ୍ନି, ସବୁ କଳ୍ପନା ଓ ଜଳ୍ପନାର ଅବସାନ ଟାଣି ୧୯୮୯ ମେ ୨୨ରେ ଅଗ୍ନି ପରୀକ୍ଷା ହେଲା, ଅଗ୍ନିର ସଫଳ ପରୀକ୍ଷଣରେ ପ୍ରଧାନମନ୍ତ୍ରୀ, ରାଜୀବ ଗାନ୍ଧି ଓ ରାଷ୍ଟ୍ରପତି ଭେଙ୍କଟରମଣ ଖୁସିରେ ଆତ୍ମହରା ହୋଇଉଠିଲେ । ୧୯୯୮ ଫେବୃୟାରୀ ୨୫ ତାରିଖ ୧୧ଟା ୨୩ ମିନିଟରେ ପୁଣି ପୃଥିବୀର ସଫଳ ଉତ୍କ୍ଷେପଣ କରାଗଲା । ଦେଢ଼ଶହ କିଲୋମିଟର ଦୂରଭେଦୀ କ୍ଷେପଣାସ୍ତ୍ରର ପରୀକ୍ଷା ଫଳରେ ଦେଶର ରକେଟ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି ହେଲା । ସେତିକିରେ କଲାମ ନୀରବ ହେଲେନାହିଁ । ତ୍ରିଶୂଳ, ନାଗ ପରି କ୍ଷେପଣାସ୍ତ୍ରର ପରୀକ୍ଷା କରାଇ ପୃଥିବୀରେ କ୍ଷେପଣାସ୍ତ୍ର ମାନବରେ ରୂପାନ୍ତରିତ ହେଲେ । ୧୯୯୦ ଜାନୁୟାରୀ ୨୨ରେ କଲାମଙ୍କୁ ପଦ୍ମ ବିଭୂଷଣ ସମ୍ମାନରେ ସମ୍ମାନିତ କରାଗଲା । ୧୯୯୦ ଡିସେମ୍ବରରେ ଯାଦବପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟର ଅଫ୍ ସାଇନ୍ସ ସମ୍ମାନରେ ଭୂଷିତ କରାଇଲେ । ଏହାପୂର୍ବରୁ ୧୯୮୨ରେ ମାଡ୍ରାସର ଆନ୍ନା ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟର ଅଫ୍ ସାଇନ୍ସରେ ଭୂଷିତ କରିଥିଲା । ଆଶ୍ଚର୍ଯ୍ୟର କଥା କଲାମଙ୍କୁ ଭାରତର ୨୫ଟି ବିଶ୍ୱବିଦ୍ୟାଳୟ ସମ୍ମାନ ସୂଚକ ଡକ୍ଟରେଟ ଉପାଧି ଦେଇଛି । ଦେଶର ପ୍ରତିରକ୍ଷା ବିଭାଗକୁ ତାଙ୍କର ଅତୁଳନୀୟ ଦାନ ପାଇଁ ୬୬ ବର୍ଷ ବୟସରେ ୧୯୯୭ରେ ଭାରତ ରତ୍ନ ସମ୍ମାନରେ ଭୂଷିତ କରାଗଲା । ଏହାପରେ ବି କଲାମ ନୀରବ ହୋଇ ବସିନଥିଲେ । ୧୯୯୮ ମେ ୧୧ ଓ ୧୩ ପୋଖରାନ୍‌ର ପରମାଣୁ ପରୀକ୍ଷା କରି ସାରା ବିଶ୍ୱ ଜନତାକୁ ଚମକାଇ ଦେଇଥିଲେ । ଉତ୍ତପ୍ତ ଉଦିଆ ନିପଟ ଖରାବେଳଟାରେ ଗୁର୍ଖା ଟୋପିକୁ ମୁଣ୍ଡରେ ଢାଙ୍କି ସେ ଯେଉଁ କାର୍ଯ୍ୟ କଲେ ନିଶୂନ୍ ମରୁଭୂମିଟା କମ୍ପି ଉଠିଲା । ଏତିକିବେଳେ ଭାରତର ରାଷ୍ଟ୍ରପତି କେ.ଆର. ନାରାୟଣନଙ୍କ କାର୍ଯ୍ୟକାଳ ଶେଷ ହେବାରୁ ଦ୍ୱାଦଶ ରାଷ୍ଟ୍ରପତି ପାଇଁ ପ୍ରାର୍ଥୀ ଖୋଜା ପଡ଼ିଲା । ଶେଷରେ କଲାମ ହିଁ ହେଲେ ଯୋଗ୍ୟ ପ୍ରାର୍ଥୀ ।

କ୍ଷେପଣାସ୍ତ୍ର ମାନବ ପ୍ରାର୍ଥୀପତ୍ର ଦାଖଲ କଲେ । ଦେଶର ବହୁ ବରିଷ୍ଠ ନେତା ତାଙ୍କୁ ସମର୍ଥନ ଜଣାଇଲେ । ଶହେ କୋଟି ଭାରତୀୟଙ୍କ ସ୍ନେହ, ଶ୍ରଦ୍ଧା ଓ ସଦିଚ୍ଛାକୁ ପାଥେୟ

କରି କଲାମ ହେଲେ ଭାରତର ଦ୍ୱାଦଶ ରାଷ୍ଟ୍ରପତି ।

୨୦୦୨ ଜୁଲାଇ ୨୫ରେ ସେ ଶପଥ ନେଲେ । ତାଙ୍କର ଏହି ଶପଥ ପାଠ ଉତ୍ସବକୁ ସ୍କୁଲ ପିଲାଙ୍କୁ ନିମନ୍ତ୍ରଣ ଜଣାଇବାକୁ ସେ ଅଡ଼ି ବସିଥିଲେ । ବିରାଟ ଅଶୋକା ହଲରେ ଭାରତ ଇତିହାସର ପ୍ରଥମ ଥର ପାଇଁ ସାଧାରଣ ସ୍କୁଲ ପିଲାମାନେ ପହଞ୍ଚିବାର ଅଧିକାର ପାଇଲେ । ଭାରତ ରତ୍ନ ପାଇ ରାଷ୍ଟ୍ରପତି ହେବାର ସେ ହେଲେ ଦ୍ୱିତୀୟ ବ୍ୟକ୍ତି । ଦେଶର ସର୍ବୋଚ୍ଚ ପଦବୀରେ ରହି ବି, ବିଜ୍ଞାନ ଓ ଗବେଷଣାକୁ ପାଶୋରି ଦେଇନାହାନ୍ତି । ରାଷ୍ଟ୍ରପତି ହେବା ପୂର୍ବରୁ ସେ ତାମିଲନାଡୁର ଆନ୍ନା ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିଲେ । ଏବେବି ରାଷ୍ଟ୍ରପତି ଭବନରେ ଥାଇ ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କୁ ଭିଡ଼ିଓ ମାଧ୍ୟମରେ ଶିକ୍ଷା ଦେଉଛନ୍ତି । ଭାରତର ବିଭିନ୍ନ ପ୍ରଦେଶ ବୁଲି ବୁଲି ସେ କୁନି କୁନି ପିଲାଙ୍କ ମେଳରେ ବିଜ୍ଞାନ ଶିକ୍ଷାକୁ ପ୍ରଚାର କରୁଛନ୍ତି । ନେହେରୁଙ୍କ ପରେ କଲାମ ଦ୍ୱିତୀୟ ବ୍ୟକ୍ତି ଯେ କି ପିଲାଙ୍କୁ ଆଦର କରୁଛନ୍ତି ଆଉ ଦେଶର ଭବିଷ୍ୟତ ହିସାବରେ ତାଙ୍କୁ ସମ୍ମାନ ଦେଉଛନ୍ତି । ପ୍ରତିଟି ସଭାରେ ସେ ସ୍କୁଲ ପିଲାମାନଙ୍କୁ ହିଁ ଅଗ୍ରାଧିକାର ଦେଉଛନ୍ତି କାରଣ ଦେଶକୁ ଗଢିବାକୁ ହେଲେ ପ୍ରଥମେ ହିଁ ଆମ ଦେଶର ଶିଶୁମାନଙ୍କୁ ଉପଯୁକ୍ତ ମଣିଷ କରିବାର ମନ୍ତ୍ର ସେ ଗ୍ରହଣ କରିସାରିଛନ୍ତି । ଏହି ନିକଟରେ ଓଡିଶା ଆସିଥିବା ସମୟରେ ସେ ଓଡିଶାର ଅନେକ ସ୍କୁଲ ପରିଦର୍ଶନ କରିଥିଲେ ଓ ତାଙ୍କ ରହଣି ସମୟର ଅଧିକାଂଶ ସମୟ ଏହି ପିଲାମାନଙ୍କ ଗହଣରେ କଟାଇଥିଲେ । ଆଉ ଗୋଟିଏ ସଭାରେ ଦୃଢ଼ କଣ୍ଠରେ କହିଥିଲେ ମୁଁ ଓଡିଶାକୁ ସରକାରୀ ସ୍ତରରେ ଆସିନି 'ଗୋଟିଏ କୁନି ଝିଅର ଚିଠିର ଆକର୍ଷଣ ମୋତେ ଓଡିଶା ମାଟିକୁ ଟାଣି ଆଣିଛି ।'

ଏହିପରି ଏକ ମହାନ ସାଧକ, ନିରଅହଂକାରୀ ଦେଶ ସେବକ ମଣିଷଟିକୁ ଭାରତ ରାଷ୍ଟ୍ରପତି ଭାବରେ ପାଇ ନିଜକୁ ଗର୍ବିତ ମନେ କରୁଛି ।

❖❖

